# ବନ୍ଦୀର ମର୍ମବାଣୀ



ଶ୍ରୀନାଥ ରଥ

# ବନ୍ଦୀର ମର୍ମବାଣୀ

ପଦ୍ମଭୂଷଣ ଡକ୍ଟର ରାଧାନାଥ ରଥ
ସଂପାଦକ, ସମାଜ

ପ୍ରକାଶକ
ଗୋପବନ୍ଧୁ ସାହିତ୍ୟ ମନ୍ଦିର

## ଉତ୍ସର୍ଗ

ମୋ ଜୀବନର ପରମ ଆରାଧ୍ୟ ଗୁରୁ ଓ ଦିଗ୍‌ଦର୍ଶକ

ପଣ୍ଡିତ ଗୋପବନ୍ଧୁଙ୍କ ପାବନ ସ୍ମୃତି ଉଦ୍ଦେଶ୍ୟରେ . . . . . .

— ରାଧାନାଥ

# ।। ପ୍ରକାଶକୀୟ ।।

ଝଡ଼ଝଞ୍ଜା, ବାଧାବିପତ୍ତିର ଉପଳ ଖଣ୍ଡର ଘାତ-ପ୍ରତିଘାତରେ ବୀତସ୍ପୃହ ନହୋଇ ମନୋଜୀବନ ପ୍ରବଳ ଥିବା ବ୍ୟକ୍ତିମାନେ ହିଁ ସ୍ୱାର୍ଥକୁ ତ୍ୟାଗକରି ପରମାର୍ଥ ପାଇଁ କର୍ମମୟ ଜୀବନ ବରଣ କରିଥାନ୍ତି। ସୁଖଦୁଃଖ, ଲାଭକ୍ଷତିର ହିସାବ ସେମାନଙ୍କ ପାଖରେ ଗୌଣ। ଜାତୀୟ ଜୀବନର ସମୃଦ୍ଧି, ବହୁଜନ ହିତ ନିମନ୍ତେ ସେମାନଙ୍କ କର୍ମ ଉଦ୍ଦିଷ୍ଟ– ଏହି ବିଶ୍ୱାସରେ ଦୃଢ ଥାଇ କଲ୍ୟାଣକର ମାର୍ଗ ନିର୍ମାଣ କରିବା ପାଇଁ ସେମାନଙ୍କର ସମଗ୍ର ଜୀବନ ବ୍ୟୟିତ ହୋଇଥାଏ। ଚିରାଚରିତ ପ୍ରଥା, କୁସଂସ୍କାର ଓ ଅଭ୍ୟାସର ଜଡ଼ ଆଚ୍ଛାଦନ ଏହି ଅନନ୍ୟ ସାଧାରଣ ବ୍ୟକ୍ତିମାନଙ୍କର ପ୍ରବଳ ମାନସିକ ଶକ୍ତିକୁ ଚାପି ରଖିପାରେ ନାହିଁ। ଏମାନେ ଯୁଗ ନିର୍ମାଣ କରନ୍ତି। ଏହି ମହତ୍ ବ୍ୟକ୍ତିମାନେ ନିଜର ନିଜତ୍ୱ ପ୍ରଭାବରେ ସ୍ୱତନ୍ତ୍ର ଓ ଏକକ ବୋଲି ମନେହେଲେ ମଧ୍ୟ ସମଗ୍ର ମାନବ ଜାତିର ବନ୍ଧୁ, ସହୋଦର, ମଙ୍ଗଳାକାଙ୍କ୍ଷୀ, ନିର୍ଭୀକ, ଦୃଢପ୍ରତିଜ୍ଞ ସାଥୀ ଓ ସାରଥୀ।

ପୂଣ୍ୟାତ୍ମା ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ପଞ୍ଚଶିଷ୍ୟ, ଆଜୀବନ ଅନୁଗାମୀ ଡ଼କ୍ଟର ରାଧାନାଥ ରଥ ସେହିଭଳି ଜଣେ ମନନଶୀଳ ସାଧକ ଓ ଦେଶସେବକ। ୧୯୧୯ ମସିହା ଅକ୍ଟୋବର ୪ ତାରିଖରେ ସର୍ବପ୍ରଥମେ 'ସାପ୍ତାହିକ ସମାଜ' ଆତ୍ମପ୍ରକାଶ କରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସଂପାଦନାରେ। ଏହି ପବିତ୍ର କର୍ମଟି କରିବାପାଇଁ ଗୋପବନ୍ଧୁ ସିଂହଭୂମର ଅରଣ୍ୟ ଅଧ୍ୟୁଷିତ ଚାଇଁବସାରୁ ଖୋଜିଆଣିଥାନ୍ତି ଜଂଗଲ ବିଭାଗରେ ଚାକିରୀ କରୁଥିବା ଯୁବକ ରାଧାନାଥଙ୍କୁ। ନିଜ ଡ଼ାଏରୀରେ ଅସାଧାରଣ, ମନନଶୀଳ ବ୍ୟକ୍ତି ଦୂରଦ୍ରଷ୍ଟା ଗୋପବନ୍ଧୁ ଗଭୀର ବିଶ୍ୱାସରେ ଲିପିବଦ୍ଧ କରନ୍ତି କେତୋଟି ଧାଡ଼ି– "ରାଧାନାଥ ନାମକ ଯୁବକଙ୍କ ସଂଗେ ଆଳାପ ହେଲା। ତାଙ୍କର କର୍ମତତ୍ପରତା, ନିଷ୍ଠା, ନିର୍ଭୀକତା ଓ ସ୍ୱଦେଶପ୍ରୀତି ଦେଖି ମୁଁ ପ୍ରୀତ। ସତ୍ୟବାଦୀର ଭବିଷ୍ୟତ କର୍ମପନ୍ଥା ପାଇଁ ଏଭଳି ଯୁବକ ଲୋଡ଼ା।" କି ଅପୂର୍ବ ଶକ୍ତି ଥିଲା ଗୋପବନ୍ଧୁଙ୍କ ଆହ୍ୱାନରେ! ସିଦ୍ଧାନ୍ତ ଗ୍ରହଣ କରିବାକୁ ମୁହୂର୍ତ୍ତେ ମଧ୍ୟ ବିଳମ୍ବ ହେଲାନାହିଁ। ଜଙ୍ଗଲ ବିଭାଗ ଚାକିରୀ ଛାଡ଼ି ଦେଇ ମାତ୍ର ୧୫ଟି ଟଙ୍କା ବେତନରେ ସତ୍ୟବାଦୀରେ ଦୀନଜନବନ୍ଧୁ ଗୋପବନ୍ଧୁଙ୍କ ସହକାରୀ ହେବା ନିମନ୍ତେ ଗଭୀର ଶ୍ରଦ୍ଧାରେ ଧାଇଁ ଆସିଥିଲେ ରାଧାନାଥ। ୧୯୧୯ ଅକ୍ଟୋବର ୪ତାରିଖ ଦଶହରା ଦିନ 'ସାପ୍ତାହିକ ସମାଜ'ର ଜନ୍ମ। ସେହି ଦିନୁ ଆଜି ପର୍ଯ୍ୟନ୍ତ ଦୀର୍ଘ ୭୪ବର୍ଷ ସେ 'ସମାଜ'ର ଗୁରୁଦାୟିତ୍ୱ ବହନ କରି ଚାଲିଛନ୍ତି ଗୁରୁ-ନିର୍ଦ୍ଦେଶିତ ମାର୍ଗରେ।

ଏକାଧାରରେ ଜନନେତା, ସାମ୍ବାଦିକ, ଶିକ୍ଷାବିତ୍‌, ରାଜନୀତିଜ୍ଞ, ସାହିତ୍ୟିକ ଓ ସମାଜସେବୀ ଭାବରେ ବହୁ ଘଟଣାବହୁଳ କାର୍ଯ୍ୟକ୍ରମକୁ ନିୟନ୍ତ୍ରିତ କରି ନୈତିକ ମୂଲ୍ୟବୋଧ ପ୍ରତିଷ୍ଠା ମାଧ୍ୟମରେ ଉତ୍କଳର ଜାତୀୟ ପିତା ଗୋପବନ୍ଧୁଙ୍କ ଋଣ ପରିଶୋଧ କରିବା ଦିଗରେ ତାଙ୍କର ପ୍ରୟାସ ଅବ୍ୟାହତ ରହିଛି। ସୁଦକ୍ଷ ସଂପାଦକ ଓ ଜନନେତା ଭାବରେ ଏତେ ଦାୟିତ୍ୱ ତାଙ୍କୁ ବହନ କରିବାକୁ ହୋଇଛି ଯେ ସମୂହର ଚିନ୍ତା ଜରୁକରୁ ଆପଣାର କବିସତ୍ତା ପ୍ରତି ସେ ଯଥେଷ୍ଟ ଧ୍ୟାନ ଦେଇପାରି ନାହାନ୍ତି। ଜଣେ ଭାବୁକ, ଜାତୀୟବାଦୀ କବିର ହୃଦୟ ନେଇ ବନ୍ଦୀଶାଳାରେ ସେ ତତ୍‌କାଳୀନ ପରାଧୀନ ଭାରତର ପରିସ୍ଥିତିକୁ ଏକ ସଂବେଦନଶୀଳ ହୃଦୟରେ ଅବଲୋକନ କରିଛନ୍ତି।

ବ୍ରହ୍ମପୁର ଜେଲରେ ଦୁଇବର୍ଷ ବନ୍ଦୀଶାଳାରେ ଥିବାବେଳେ ବହୁ କବିତା, ପ୍ରବଂଧ ରଚନା କରିଛନ୍ତି ସେ। ଯଦିଓ କିଶୋର ବୟସରୁ କବିତା ପ୍ରତି ତାଙ୍କର ଏକାନ୍ତ ଅନୁରାଗ ଭିନ୍ନଭିନ୍ନ ସମୟରେ ଲିଖିତ କବିତା ମାଧ୍ୟମରେ ପ୍ରକଟିତ ହୋଇଛି, କିନ୍ତୁ ଏହି ଦୁଇଟି ବର୍ଷ ନିରବଚ୍ଛିନ୍ନ ଭାବରେ ସାରସ୍ୱତ ସାଧନାରେ ସେ ଅଭିନିବେଶ କରିଛନ୍ତି। 'ମୋ ଜେଲ ସ୍ମୃତିଲିପି', ବ୍ୟାସକୃତ 'ମହାଭାରତ'ର ଅନୁବାଦ, 'Das Capital'ର ଅନୁବାଦ ଇତ୍ୟାଦି ବହୁ ଅନୁବାଦ କାର୍ଯ୍ୟ ମଧ୍ୟ ସେ କରିଛନ୍ତି। କିନ୍ତୁ ସେଗୁଡ଼ିକ ଆଜି ପର୍ଯ୍ୟନ୍ତ ପୁସ୍ତକାକାରରେ ପ୍ରକାଶିତ ହୋଇନାହିଁ। ପୁଣ୍ୟାତ୍ମା ଗୋପବନ୍ଧୁଙ୍କର ପ୍ରଭାବ ପୂଜ୍ୟ ରାଧାନାଥ ବାବୁଙ୍କ ଜୀବନରେ ଯେଭଳି ପ୍ରତିଫଳିତ, ତାଙ୍କର ରଚନାଶୈଳୀ ମଧ୍ୟ ପ୍ରାଣ-ପ୍ରତିମ ଗୁରୁଙ୍କର ପ୍ରେରଣାରେ ଅନୁରୂପ ଭାବେ ପ୍ରଭାବିତ।

ଦୀର୍ଘ ଅର୍ଦ୍ଧଶତାବ୍ଦୀ ପୂର୍ବେ ବନ୍ଦୀଶାଳାରେ ରଚିତ ଏହି କବିତାଗୁଡ଼ିକ ଏବେ ମଧ୍ୟ ଓଡ଼ିଶାର ସୁଧୀ ପାଠକ, ଗବେଷକ ଓ ଉତ୍ତର ପୁରୁଷମାନଙ୍କ ପାଇଁ ମୂଲ୍ୟବାନ୍ ହୋଇଥିବାରୁ ଆମେ ତାହାର ପ୍ରକାଶନ ଦାୟିତ୍ୱ ବହନ କରିଅଛୁ। ଓଡ଼ିଆ ଜନଜୀବନର ଚଳନ୍ତି ଇତିହାସ, ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ଦୈନିକ 'ସମାଜ' ସମ୍ପାଦକ, ବର୍ଷୀୟାନ୍ ସାମ୍ବାଦିକ ରାଧାନାଥ ରଥ ଏକ ବ୍ୟକ୍ତି ନୁହନ୍ତି, ସଂପ୍ରତି ସେ ଏକ ଅନୁଷ୍ଠାନ। ତାଙ୍କର କବିତାବଳୀ 'ବନ୍ଦୀର ମର୍ମବାଣୀ' ପ୍ରକାଶ କରିବାର ଅନୁମତି ଲାଭ କରିଥିବାରୁ ଆମେ ତାଙ୍କ ନିକଟରେ ଚିର କୃତଜ୍ଞ।

ଶ୍ରୀଯୁକ୍ତ ରଥଙ୍କ ଇଚ୍ଛା ଅନୁସାରେ ଏହି ପୁସ୍ତକ ଲବ୍ଧ ସମସ୍ତ ଅର୍ଥ ଗୋପବନ୍ଧୁ ସାହିତ୍ୟ ମନ୍ଦିର ଆନୁକୂଲ୍ୟରେ ଏକ ପାଣ୍ଠି ଗଠନ କରାଯାଇ ଶାରିରୀକ ଅକ୍ଷମ ଛାତ୍ରଛାତ୍ରୀଙ୍କୁ ଶିକ୍ଷାଲାଭ ନିମନ୍ତେ ବୃତ୍ତି ଆକାରରେ ଦିଆଯିବା ପାଇଁ ନିଷ୍ପତ୍ତି ଗ୍ରହଣ କରାଯାଇଛି।

ପ୍ରକାଶକ
ଗୋପବନ୍ଧୁ ସାହିତ୍ୟ ମନ୍ଦିର



## — ସୂଚୀପତ୍ର —





# ମୋ ଜନମ-ଭୂଇଁ

ତୁହି ଗୋ ଜନମ ଭୂଇଁ ଜୀବନ-ଦାୟିନୀ
କି ଯେନ ବିଷାଦ କମ୍ପା ତୁ ଅଭିମାନିନୀ ?

ସରଳ ତରଳ ପ୍ରାଣେ ତୋ କୋମଳ ବିଚରି,
ରୂପେ ତୋର ନିରେଖଇ ମ[illegible]ତ ମାଧୁରୀ ।
ନିତି ନିତି ଆସି ତୋତେ ସେବଇ ତପନ,
ଅବିରତ ଆଲିଙ୍ଗଇ ମଳୟ ପବନ ।
ସୁନୀଳ ଅମ୍ବର ତୋତେ ବିଚିତ୍ର ବିତାନ,
ଆଲୋକ ପଲକେ ଫେଡ଼େ ତାମସ-ନିଧାନ ।
ଅଗଣିତ ତାରାରାଜି ଖଚିତ ଗଗନୁ,
ସୁଧାକର କରେ ତୋର ଉଜଳେ ଅତନୁ ।
ନବୀନ ନୀରଦ ଭାସିଆସି ତୋ ଲପନେ,
ନୀରଧାରେ ଧୋଇ ତୋତେ ଶ୍ୟାମଳ ବସନେ;

ସଜାଇ ଯତନେ ଖଞ୍ଜେ ସୁମନ ସମ୍ଭାର,
ପୁଲକଇ ଘ୍ରାଣେ ତୋର ସୁରଭି ସଞ୍ଚାର ।
ତୋ ଅଞ୍ଚଳ ଚର୍ଚ୍ଚିତ ଗୋ ଶ୍ୟାମ ଦୂର୍ବାଦଳେ,
ତୋ କର ପୂରିତ ଗୁରୁ ଶ୍ୟାମ ଶସ୍ୟମାନେ ।
ତୋ ଅଙ୍ଗେ ଗୁମର ଦୋଳେ ପାଦପ-ଶିଖର
ତୋ ସନ୍ତାନେ କ୍ଷୀର ମା’ ଗୋ ଗିରି-ନଦୀ-ଧାର ।

ମଞ୍ଜୁଲତା କୁଞ୍ଜ ତୋର ଚିକ୍କଣ ଚିକୁର,
ଭୃଙ୍ଗ ଶ୍ୟାମ ଗିରି ତୋର କବରୀ ମଞ୍ଜୁଳ ।

ଦିବାଲୋକେ ଫୁଟେ ତୋର ଅଧରେ ସୁହାସ,
ନିଶୀଥ ତାମସ ତୋର ନିଦ୍ରାର ଆଭାସ ।

ଶ୍ରବଣେ ଶୁଣାନ୍ତି ତୋରେ ବିହଙ୍ଗ କାକଳି,
ଅଶେଷ ଅନନ୍ତ ଛନ୍ଦେ ସଙ୍ଗୀତ ଲହରୀ ।

ସନ୍ତାନ ତୋ କୋଳେ ମା' ଗୋ ମାନବ-ସଂସାର,
ଜୀବଜନ୍ତୁ ପଶୁ କୁଳ ତୋର ପରିଚର ।

ସର୍ବେ ତୁହି ସମସୁଖେ ପାଳୁ ଲୋ ଜନନୀ :
ତୋ ନେତ୍ରେ ସୁନ୍ଦର ସବୁ ଦିବସ ରଜନୀ ।

ସୁନୀଳ ପୟୋଧି ତୋରେ ଅନନ୍ତ ଅମୃତ,
ତୋ ବୁକୁରେ ସେହି ସୁଧା ସାଗର ସଚିତ ।

ତୋ ସ୍ନେହ ଜନନୀ ହୃଦେ ଦିବ୍ୟ ପ୍ରକଟିତ,
ତୋ ନିଦେଶେ ଜୀବଧର୍ମ ସଦା ନିୟନ୍ତ୍ରିତ ।

ସ୍ୱଜନ ସେନେହ ସୁଖେ ତୋର ଆଶୀର୍ବାଦ,
ସ୍ୱଜନ ବିଚ୍ଛେଦେ ଦେଖେ ଜନନୀ ତୋ ଖେଦ ।

ସ୍ଥାବରଜଙ୍ଗମ ସେବା ତୋ ପାଳନ ସୁଖ,
ପ୍ରାଣୀର ବେଦନା ତୋର ସୂଚଏ ଅସୁଖ ।

ତୋ ପ୍ରୀତି-ପୂରିତ ପୂତ ବିଭୂତି ଆଧାର—
ପିତାମାତା ଭାଇବନ୍ଧୁ ସ୍ୱଜନ ସଂସାର ।

ତୋ କୋଳେ ଆଶ୍ରିତ ଜନେ ଅଟନ୍ତି ସୋଦର,
ସର୍ବେ ସମଭାବ ସର୍ବେ ସମାନ ଆଦର ।

ସମବୁଦ୍ଧି ସମଚିନ୍ତା ସମ ଦରଶନ,
ଶୁଦ୍ଧପୂତ ସ୍ୱାର୍ଥଯଜ୍ଞେ ମୁକ୍ତିର ସାଧନ ।

ଶ୍ରବଣ ମନନ ଧ୍ୟାନ ତୋ କୀର୍ତ୍ତି କଥନ,
ତୋ କୋଳେ ଜନମ ପୁଣି ତୋ କୋଳେ ମରଣ ।

ତୋହର ରକ୍ଷଣେ ହେଉ ଜୀବନ-ବିଳାସ
ତୋହର ବିକାଶେ ହେଉ ମୋ ଆତ୍ମ-ପ୍ରକାଶ ।

ବିଶ୍ୱ ତୋ ବିଜୟେ ଲଭୁ ଶୁଭ ସମାଚାର
ବିଶ୍ୱ-ଧର୍ମ ସାଧନେ ତୁ ଏକାନ୍ତ ଆଧାର ।

ହେଲ୍ କିବା ପୂଜା ଉପଯୋଗେ ବ୍ୟତିକ୍ରମ ?
ତେଣୁ ଗୋ ଜନନୀ ଆଜ ଏ ବିଚ୍ଛେଦ ମମ ?
ଏ ନୁହେଁ ଉପେକ୍ଷା ଏହା ପୂଜନେ ପରୀକ୍ଷା,
ବାସନା-ବିହୀନ କର୍ମ ସାଧନେ ଏ ଦୀକ୍ଷା ।

ତୋହର ସେବାରେ ଶାନ୍ତି ଆସେ ନିରନ୍ତର,
ତୋ ପଦ ପରଶେ ମାଗୋ ପୁଲକେ ଅନ୍ତର ।

ତୋହର ବନ୍ଦନେ ସିନା ବିଭୁ ସଙ୍କୀର୍ତ୍ତନ,
ତୋହ ଆଶୀର୍ବାଦେ ଧନ୍ୟ ହେଉ ଗୋ ଜୀବନ ।



---

ରଚନା କାଳ ୧୯୪୨ : ବ୍ରହ୍ମପୁର ଜେଲ ।

# ମୋ ଦେଶୁ ଚିର ଦୁର୍ଦ୍ଦିନ ଯାଉ

କୁଟୀରୁ ଜନମି କୁଟୀରେ ପୁଣି ଲଭିଲ ଯେହୁ,
କୋଟି ଜନ ହୃଦେ କେମନ୍ତେ ପୁଣି ଶୋହୁଛି ସେହୁ ।
କାହିଁ କାଳ ଗର୍ଭେ କେତେ ତ କଲ୍ପ ସଂଖ୍ୟାରେ ଗଲେ,
କାହା କଥା ମନେ ନ ପଡ଼େ, ପଡ଼େ ଏ ମହୀତଳେ—

ଜଣକର କଥା ସକଳ ନେନେ ଫୁଟାଇ ଲୁହ,
ଏ କି ବିଡ଼ମ୍ବନା ! ନୁହେ ତ ସେ କା' ଘରି କି ପୁଅ ।
ବର୍ଷ ପରେ ବର୍ଷ ବିତଇ ନୁହେ ବିସୋର ମନୁ,
କାଳ ସ୍ରୋତେ ଲୁଚିଯିବାରେ ସ୍ମୃତି ଚିରେ ତା' ତନୁ ।

ଆପଣାରୁ ବଳି ପ୍ରିୟ ସେ, ସତେ ଅଛି କି ପାଶେ,
ଦିବସ ଯାମିନୀ ତା' ବିନୁ ଶୂନ୍ୟ ଏ ଦେଶ ଦିଶେ ।
ବସୁଧା ଗ୍ରାସଇ ଶରୀର, ସ୍ମୃତି ଗ୍ରାସଇ କାଳ,
କାଳଠାରୁ ବଳି କରାଳ ନୁହେ ଅନଳ ଜାଳ ।

ସେ କରାଳ କାଳ କବଳୁ ବର୍ତ୍ତି ଯା' ନାମ ଭବେ,
ଚିର ସ୍ମୃତିପଟେ ଚର୍ଚ୍ଚିତ ନମି ପୂଜନ୍ତି ସର୍ବେ—
ଆଜି ସେହି ରୂପ ମାଧୁରୀ ରବି କନକ-କରେ,
ଚର୍ଚ୍ଚିତ ମାନସ-ବଳୟେ ଘାପ୍ର ମହିମା ବଳେ ।

× × ×

ସେ କୁଟୀରବାସୀ କୋଟିଙ୍କ ହୃଦକନ୍ଦରେ ପୁଣି,
ସବୁ ଗୁପ୍ତାମାପ୍ତା ପଟଳ ଭେଦି ରଚଲ ଧ୍ୱନି ।
ଗାଇଲ ଯେ ରଣ ସଙ୍ଗୀତ ଅବା ପ୍ରଣୟ ଗୀତ,
ସ୍ୱଦେଶ-ସ୍ୱଜନ-ସ୍ୱଜାତି-ବିଶ୍ୱ-ମାନବ-ପ୍ରୀତ ।

ସ୍ୱାଧୀନତା-ମନ୍ତ୍ର ମୋହନ ମନ୍ତ୍ର ରୁଦ୍ର କରୁଣ,
କିଶଳୟ ସମ କୋମଳ ମଧୁ ଗୀର ଦାରୁଣ !

ଅଭିନବ ଛନ୍ଦ ବନ୍ଧନେ ବାନ୍ଧି ସଙ୍ଗୀତ ତାନେ,
ପ୍ରତି ହୃଦତନ୍ତ୍ରୀ ଥରାଇ କହି ମଧୁର କାନେ—

ଯାଇଛି ଲୋତକ ବୁହାଇ ଚିର ବିରହେ ଝୁଲି,
ସ୍ୱଦେଶ-ସ୍ୱଜନ-ପ୍ରଣୟ ତାର କେ ପାରେ କଳି ।

ପ୍ରଣୟ-ପୂରିତ ଅନ୍ତରେ ଅନୁଭବିଲ ଯାହା
ତରଳ କରୁଣ ନୟନ-ନୀରେ ଭସାଇ ତାହା —

ପରାଣ ଆବେଗେ ବିକଳେ କଳ ମଧୁର ଗୀତରେ
କହି ଦେଇ ନେତ୍ର ମୁଦିଲେ ଆହା ସେ ସିନା ଶରେ !

× × ×

ବିରହ ବେଦନା ବିରହୀ ମାନବ ଭୋଗିଲ ଯେଣୁ
ବିଭବେ ବିଷାଦ ବିଲୋକି କାହିଁ କହିଲ ତେଣୁ—

"ଆହା ! ପ୍ରିୟଜନ ବିରହ କି ଦାରୁଣ କଷଣ !
ପ୍ରୀତିପାଶେ ବନ୍ଧା ଜଗତେ ସର୍ବ ଜଡ଼ ଚେତନ ।

ଏ ବିରହ ବ୍ୟଥା ହୁଅଇ ବନ୍ଦୀ ପରାଣେ ବ୍ୟଥା,
ପଲକେ ପଲକେ ପଡ଼ଇ ମନେ କେତେ କି କଥା ।

ପ୍ରଣୟ ପୀୟୂଷେ ମିଶିଛି କିମ୍ପା ବିରହ-ବିଷ,
ବିଶ୍ୱବାସୀ ପ୍ରତି ବିଧିର ଏ କି ବିଧି-ଆଶିଷ ।

ସୁନ୍ଦର ସରୋଜ ଚରଣେ କିମ୍ପା କଣ୍ଟକ ଅଛି,
ବିପରୀତ ସୃଷ୍ଟି ରହସ୍ୟ କିଏ ପାରିବ କହି ?

ପ୍ରିୟଜନ ପ୍ରିୟ ସ୍ଥାନ ମୁଁ ଛାଡ଼ି ବନ୍ଦୀ ଏଠାରେ,
ବିରହ-ବିଷମ-ବିଷେ ମୋ ମନ ପରାଣ ଧାରେ !"

ବନ୍ଦୀ ସ୍ୱର୍ଗପୁରେ ସେ ଆଜି ମର୍ତ୍ତ୍ୟ-ପ୍ରଣୟ-ସ୍ମୃତି,
ସ୍ୱଦେଶ ସ୍ୱଜନ ବିରହେ କାହିଁ ମରିବ ଧୃତି ।

ଅଶନ୍ତ୍ରରେ ସର, ସରିତ, ଗିରି ବନ ରସାଳ,
ଗୁପ୍ତ ବୃନ୍ଦାବନ ବକୁଳ ମଞ୍ଜୁ ତମାଳମାଳ,

କୁରଅନା, ତାଳ, ପୁନ୍ନାଗ, ନାରକେଳ ଶ୍ୟାମଳ,
ଶୋଭା ସମ୍ପଦରେ ବହରି କୁଇଁ କୁଟୀର ତଳ ।

ଅଲକ୍ଷ୍ୟେ ପଶିଲେ ପୂରୁବ ଦିଗୁଁ ମନ୍ଦିର ଭାଗେ,
କୃଷ୍ଣାଞ୍ଜନ କାନ୍ତ ସାକ୍ଷୀ ସେ ଗୋପୀନାଥଙ୍କ ଆଗେ ।

ଅଶ୍ରୁ ବଗଳିତ ନୟନେ ଗୃହିଁ ଚରଣରେ ନମୁଁ,
ସମୀର ପରଶେ ବାଜିଲା ପ୍ରଭୁ ଶ୍ରୀହସ୍ତ ବେଣୁ ।

ଖସିଲା ଶ୍ରୀଅଙ୍ଗୁ ସୁମନ ଦେଲା ଲବେ ସୂଚନା—
"ଦୁଃଖୀ ଜନବନ୍ଧୁ ! ହୃଦୟେ କମ୍ପା କରୁ ଶୋଚନା ?

ଦାଉଦାତେ ପ୍ରିୟ ଉତ୍କଳବାସୀ ଯାତନା ଦେଖି,
ପରାଧୀନ ଆର୍ଯ୍ୟ-ଭାରତ ଦୁଃଖ ଅବା ନିରେଖି ।

ବଡ଼ୁରୁ କ ଲଭି ଯାଉଛୁ ତୋର ସାଧନା ରାଶି,
ପଥଭ୍ରଷ୍ଟ ମଣୁ ହେଲେଣି ଏବେ ତୋ ଦେଶବାସୀ !

ଚେତାଇବା ପାଇଁ ଆସିଛୁ କମ୍ପା ଧାଇଁ ମରତେ—
ସ୍ୱାର୍ଥ ସଙ୍କୀର୍ଣ୍ଣତା ସ୍ୱଦେଶ ମୁକ୍ତି ମୂଳ କରତେ ।

ମିଳନ ବଇଁଶୀ ବଜାଇ ଦିଏଁ କହୁଛୁ ମୋରେ,
ନ ହୁଅ ବକଳ, ବାଜବ ଆସି ବସ ମୋ କୋଳେ ।

ନିରେଖି ଅନାଅ ସୁଦୂରେ ଦିଶେ ମିଳନ ବେଦୀ,
ବିବାଦର ଭୀମ ପ୍ରାଚୀର ନ ପାରନ୍ତି ସେ ଭେଦି ।

ଆସ ବନ୍ଧୁ ! ଭାଙ୍ଗି ଦିଅ ତୁ ସବୁ ସେ ଭେଦାଭେଦ,
କେହି ନୁହେଁ ପର କମ୍ପାଇ ବୃଥା ଲଗିଛୁ ବାଦ ।

ସ୍ୱର୍ଗପୁରୁ ଯେବେ ଆସିଛୁ ବସ ବେଦୀରେ ଥରେ
ମୁକ୍ତିର ମିଳନ-ବଇଁଶୀ ଦେଲି ବନ୍ଧୁ ତୋ କରେ ।"

× × × ×

ବୃନ୍ଦାବନ ବନ ଗହନେ ଗୋପୀନାଥଙ୍କ ପିଠେ,
ଉଭା ଗୋପଜନ ବନ୍ଧୁ ସେ ବଂଶୀ ଧରିଛୁ ହାତେ ।

ପରାଣ ଆବେଗେ କହଇ, ନେତ୍ରୁ ବହଇ ନୀର—
"ମିଳିଯାଅ ଦେଶବାସୀଏ କେବା ଆପଣା ପର !

ମୁକ୍ତିର ଅମୃତ ବର୍ଷିବ ଡେରି ନ କର ଆଉ,
ମିଳିଯାଅ ଭାଇ ! ମୋ ଦେଶୁ ଟଳ ଦୁର୍ଦ୍ଦିନ ଯାଉ ।"



ରଚନା କାଳ ୧୦-୬-୦୪ : ବ୍ରହ୍ମପୁର ଜେଲ୍ ।

# ଅନନ୍ତ ପଥ ଯାତ୍ରୀ, ହେ ଅନନ୍ତ !

ଅନ୍ତିମ ଶଯ୍ୟା ଶାୟିତ ହେ କବି ତୁମେ ସୁପ୍ତ ନା ଜାଗ୍ରତ,
ଚିନ୍ତିତ ମୁଦ୍ରିତ ନେତ୍ର ଶାନ୍ତ ଶ୍ରାନ୍ତ ଅବା ଅଭ୍ରାନ୍ତ ଜଗତ

ପରିସୀମା ପାରେ ଯାଇ ଦେଖୁଛ ଆଲୋକ ଜ୍ୟୋତି ବିଶ୍ୱେ, ପରିବ୍ୟାପ୍ତ
ଚଉଦିଗେ ଘେରିଛନ୍ତି ଆତ୍ମୀୟ ସ୍ୱଜନ

କୁଳ କଳତ୍ର ମାନସୀ ଶୋକାକୁଳା ଏକାନ୍ତ ବିହ୍ୱଳା ତୁମ ଜୀବନ ସଙ୍ଗିନୀ
ଭଗିନୀ ଭାମିନୀ ଭ୍ରାନ୍ତ ଭାଷା ଶୂନ୍ୟ କେତେ ଯେ କାମିନୀ

ଶୋକୋଚ୍ଛ୍ୱାସେ ପ୍ରକମ୍ପିତ ସାରା ସୌଧ ଗଗନ ପବନ
ସ୍ରୋତରୂପେ ଚାଲିଛନ୍ତି ଆତ୍ମୀୟ ସ୍ୱଜନ,

ଅଶ୍ରୁଧାର ବହେ ଗଣ୍ଡସ୍ଥଳୁ ଅବାରିତ
ପଶୁପକ୍ଷୀ ବୃକ୍ଷଲତା ସର୍ବେ ସ୍ତମ୍ଭୀଭୂତ ।

ନୀରବ ନିସ୍ତବ୍ଧ ଥୋକେ ଗମ୍ଭୀର ବଦନ,
ଯାଉଛନ୍ତି ଚାଲିଗଲେ ଆମ ପ୍ରିୟଜନ ।

କାଲି ଗାଉଥିଲେ ବସି ଶାନ୍ତିର କପୋତ
ଆକାଶରେ ଉଡ଼ିବାରେ ଦୃଶ୍ୟେ ବିମୋହିତ ।

ନିମିଷେ ମୁଦିଲେ ନେତ୍ର ନ ଫିଟିଲା ଆଉ,
ବିପ୍ଳବର ବହ୍ନିଶିଖା ନ ଜଳିବ ଆଉ ଦାଉ ଦାଉ ।

କବିର କଳ୍ପନା ସିନା ଶୂନ୍ୟେ ଭାସିଯାଏ
ଉଦ୍‌ଭ୍ରାନ୍ତ ପ୍ରେମରେ ସେ ଯେ ଗୀତ ଗାଉଥାଏ ।

ହୃଦୟ କନ୍ଦରୁ ବହେ କବିତାର ଧାରା
ସତେ ଅବା ବହିଆସେ ତରଙ୍ଗର ମାଳା ।

ବିଚିତ୍ର ଚରିତ୍ର ତାର ରସାଣିତ ହୃଦ
ମସୀ ମୁନେ ଚିତ୍ରିଦିଏ ଦୁଃଖୀଜନ ଖେଦ ।

ବିଦ୍ରୋହର ବହ୍ନି ତେଜେ ପ୍ରଜ୍ୱଳିତ ମନ୍ତ୍ର
ଡାକେ ଆସ ବୀର ବନ୍ଧୁ ଯୁବଗୋଷ୍ଠୀ ଭାଇ ।
ଭାଙ୍ଗି ଦିଅ ଟାଳିଦିଅ ସମାଜ ବନ୍ଧନ
କର ଏ ମାନବ ଗୋଷ୍ଠୀ ସୁସମ ସମାନ ।

ଭେଦ ନାହିଁ ଖେଦ ନାହିଁ ଜାଗ୍ରତ ଜନତା,
ବିରାଟ ବିସ୍ତୃତ ମହୀ ମାନବ ସଭ୍ୟତା ।

ପ୍ରକୃତି ସମ୍ପଦ ଶୋଭା ପ୍ରାଣୀର ମମତା,
ମାନବର ଉପଭୋଗ୍ୟ ନାହିଁ ବିଭିନ୍ନତା ।

ଶିଶୁର ସଂସାର ପୁଣି ପ୍ରୌଢ଼ର ଗରିମା,
ବୃଦ୍ଧର ବିଜ୍ଞରବୁଦ୍ଧି କଲ ପରସୀମା ।

ଅନନ୍ତ ଅଭ୍ରାନ୍ତ ପଥ ଆଲୋକିତ କରି,
ହେ କବି ଅନନ୍ତ ! ତୁମେ ଯାଇଛ ପ୍ରଗୃରି ।

କବି ଦାର୍ଶନିକ ତୁମେ ଗାଳ୍ପିକ, କଥିକ
ସାଧକ ନାୟକ ତୁମେ ବିପ୍ଳବ-କାରକ ।

ଶାନ୍ତି ମୈତ୍ରୀ ବିଶ୍ୱଶକ୍ତି ପୂଜନେ ଧାବକ
ଅନୀତି ଦୁର୍ନୀତି ଦୁଷ୍ଟ ଦାନବୀ ଷାଳକ ।

ସାମ୍ବାଦିକ ଥିଲ ତୁମେ ସହକର୍ମୀ ମୋର,
ସ୍ମୃତିପଟୁ ଲିଭିନାହିଁ ଏହା କର୍ମବୀର ।

ତୁମ ଚିନ୍ତା, ତୁମ ପନ୍ଥା, ତୁମ ପାଦ ଚିହ୍ନ,
ଅନୁସରୁ ଯୁବଶକ୍ତି ତୁମଠୁଁ ଅଭିନ୍ନ ।

ଚିରଦିନ ରହିଥିବ ତମ ସ୍ମୃତି ପୋଥି,
ହୃଦୟ କନ୍ଦରେ ଆମେ ରଖିବୁ ସାଇତି ।

ଫେରିଆସ କବି ପୁଣି ଏହି ଧରା ଧାମେ,
ପ୍ରିୟଜନ ରହିଥିବା ହୋଇ ତୁମେ ଆମେ ।

---

ଅନନ୍ତ ପଟ୍ଟନାୟକଙ୍କ ସ୍ମୃତି ଉଦ୍ଦେଶ୍ୟରେ ନିବେଦିତ ।

# ଉଷା ଭାବନା

ପାହାନ୍ତ ରାତିରେ ଉଠି ସୁନୀଳ ଆକାଶେ,
ଚାହୁଁ ଦେଖିଲି ଅସଂଖ୍ୟ ଦୀପାବଳୀ ହସେ,
କଏ ଧକ ଧକ କଏ ମିଞ୍ଜି ମିଞ୍ଜି ଜଳେ,
ତହୁଁ ବେଳେ ବେଳେ ଗୋଟେ ଖସି ପଡ଼େ ତଳେ ।

ଆଲୋକ ଝଲସେ ଆଖି ବୁଜି ହୋଇଗଲା,
ଚାହିଁଲା ବେଳକୁ ଆଉ ଆକାଶେ ନ ଥିଲା ।
ଠିଆ ହୋଇ ଗଣିଲି ମୁଁ ଗଗନେ ଅନାଇଁ,
କେତେଟା ଗଣୁ ନ ଗଣୁ ଦୃଷ୍ଟି ହେଲା ବାଇ ।

କେତେ ତ ଚେଷ୍ଟିଲି କେଭେ ଗଣି ନ ପାରିଲି,
ମନ ଦୁଃଖେ ବସି ଉଡ଼ି ଗତି ନିରେଖିଲି ।
କାଣିଚାଏ ରାତି ହେଲେ ବାରି ନ ପାରିଲି,
ମାତ୍ର ଚାହୁଁ ଚାହୁଁ ସବୁ ଲିଭିବା ଦେଖିଲି ।
କେତେବେଳେ କିଏ ଲିଭେ ଜଣା ନ ପଡ଼ଇ,
ବଗିଚାରେ ମୁଁ ଅଜାଣତେ ପଡ଼ିଲି କି ଶୋଇ !
ଦେଖୁ ଦେଖୁ ସବୁ ଗୋଟି ଗୋଟି ଲିଭିଗଲେ,
କୃଷ୍ଣ ତ୍ରୟୋଦଶୀ ଚନ୍ଦ୍ର କାହିଁ ଲୁଚିଥିଲେ ।
କ୍ରମେ ତାଙ୍କ କ୍ଷୀଣ ଜ୍ୟୋତି ଫିକା ପଡ଼ିଗଲା,
ଦିଗ୍‌ବଳୟେ ଉଷାଙ୍କ ସିନ୍ଦୂର ଫାଟିଲା ।

ଧରାପୃଷ୍ଠେ ସବୁ ଶୋଭା ଯାହା ଲୁଚିଥିଲେ,
ଊର୍ଦ୍ଧ୍ୱେ ଦୀପାବଳୀ ଅସ୍ତେ ତନୁ ପ୍ରକାଶିଲେ ।

ଦୀପ ଲିଭିଗଲା ସିନା ହୁଅନ୍ତା ଅନ୍ଧାର,
ଅସ୍ପଷ୍ଟ ଆଲୋକ ରେଖା ଓଳଟ ସଞ୍ଚାର !

ଗୃହୁଁ ଗୃହୁଁ ଉଷା ଶୋଭା ହେଲା ବିକଶିତ,
ଧରାପୃଷ୍ଠେ ପ୍ରକୃତି ସୌନ୍ଦର୍ଯ୍ୟ ବିଚ୍ଛୁରିତ ।

ଅଛି ଶୀତଳତା ମାତ୍ର ନାହିଁ ସେ ଅନ୍ଧାର
ଅରୁଣାଭା ଫୁଟେ ଶୂନ୍ୟ ଗଗନ ମଣ୍ଡଳ ।

ପ୍ରଶାନ୍ତ ନିଃଶବ୍ଦ ଧରା କି ରୁଚିର ଶୋଭା,
ଶାନ୍ତ ସୁଧା ବିଲେପିତ ଲାବଣ୍ୟ ପ୍ରତିଭା ।

କୋମଳ କିଶୋର ତନୁ ଅଙ୍ଗେ ଉଠେ ଫୁଟି,
ବିଜନ ବିରହ ବ୍ୟଥା ଲଭେ ଗଲା ତୁଟି ।

ଶୀତଳ ମଳୟ ମନ୍ଦେ ମନ୍ଦେ ବହିଆସେ;
ସୁଦୂର ପାଦପପତ୍ର ଦୋଳାଇ ସରସେ;

କଳରବେ କାକ ବକ ଡାକି ଦଳେଦଳେ,
ଉଡ଼ିଯାନ୍ତି ଶୂନ୍ୟପଥେ ଚେତାଇ ସକଳେ ।

ତାରାରାଜି ବୁଡ଼ିଗଲେ ତୋଫା ଦିଶେ ମହୀ
ଧରଣୀ ଅଙ୍ଗେ ଯୌବନ ଆଭା ସିନା ଏହି ।

ଚିକ୍କଣ ଶ୍ୟାମାଙ୍ଗୀ ଅଙ୍ଗେ ଫୁଟିଲେ ଯୌବନ,
କୋମଳ ଶ୍ୟାମାଭ କାନ୍ତ ଦ୍ୟୁତି ମନୋରମ,

ଯେସନେ ପ୍ରେମିକ ପ୍ରାଣେ ପ୍ରେମସୁଧା ଢାଳେ,
ପଲକେ ପ୍ରଣୟୀ ପ୍ରାଣ ତା' ପୁରତେ ଟଳେ,

ତେସନେ ଏ ଉଷାଦେବୀ ଅଙ୍ଗ ଦିବ୍ୟ ଜ୍ୟୋତି,
ଅଲକ୍ଷ୍ୟେ ପରଶି ଦୂର କାନ୍ତ ହୃଦେ ପ୍ରୀତି—

ସ୍ପନ୍ଦନ ରଚିଲା, ଚମକିଲା ଦିଗ୍‌ବଳୟ,
ପ୍ରଣୟ ବିଭୋରେ ଆସି କାନ୍ତ ଜ୍ୟୋତିର୍ମୟ,

ଉଷାରେ ଆଲିଙ୍ଗି ପ୍ରାଚୀ ଅଧରେ ଚୁମ୍ବିଲା,
ଉଷାଗଣ୍ଡେ ରକ୍ତବିନ୍ଦୁ ନିମିଷେ ଫୁଟିଲା ।

ଗୃହୁ ଗୃହୁଁ ଉଷ୍ଣ ହେଲେ ଜ୍ୟୋତିର୍ମୟ ରବି,
ବ୍ୟାଜ କୋଟିଲ ଲୁଚିଗଲା ଗୃରୁ ଉଷା ଛବି ।

ସତେ କି ଉଷାନ୍ତେ ପ୍ରୀତି ହେଲା ସଙ୍କୁଚିତ,
ଯାମିନୀ ଆଗମେ ପୁଣି ହେବ ବିକଶିତ ।

ନିଶି ଅବଶେଷେ ପ୍ରୀତି ପୂର୍ଣ୍ଣ ପୁଲକିତ,
ଉଷାଦେବୀ ନାମେ ସେହୁ ବିଶ୍ୱରେ ବନ୍ଦିତ ।

ନିଶାନ୍ତେ ଯେସନେ ଆସେ ଗୃରୁ ଉଷା ଛବି,
ମୂହୂର୍ତ୍ତେ ନ ଶୋହୁ ତାକୁ ହରିନିଏ ରବି ।

ଉଷା ସମ ଯୁବତୀ ଯୌବନ ଉଠେ ଫୁଟି
ପଲକେ ତ୍ରିଶୟ୍ୟାଘାତେ କାଳ ନିଏ ଲୁଟି;

ଏହି ମତେ ଜୀବନ-ଯୌବନ ଆସେ ଯାଏ,
ଉଷା ସମ ନିମିଷକ ପାଇଁ ସିନା ରହେ ।

କୋଟି ତାରା ଉଇଁ ପୁଣି ଯାନ୍ତି ଯଥା ଲିଭି,
କୋଟି ଜୀବ ଜନ୍ମି ପୁଣି କାଳ-ସ୍ରୋତେ ଧ୍ରୁବ

ପଲକେ ଲିଭନ୍ତି; ଯିବା ଆସିବା ଏ ଖେଳ
ଅବିରତ ଲଗିଛି ନିମିଷେ ନାହିଁ ବେଳ ।

ଜୀବନ-ଯୌବନ କେହି ନୁହେ ସଦା ଚିର,
କହନ୍ତି ସକଳେ; ମାତ୍ର ସତ କି ଏ ଗୀର ?

କ୍ଷଣେ ଆସି କ୍ଷଣେ ଯାଏ ଦୃଷ୍ଟି ଅନ୍ତରାଳେ,
ଆଧାର ଭଙ୍ଗଇ ସିନା, ଭିତ୍ତି ତ ନ ଟଳେ ।

ଜୀବନ-ଯୌବନ ସୃଷ୍ଟି ଚିର ସହଚର,
ନହେଲେ ବିଶ୍ୱପ୍ରକୃତି ହୁଅନ୍ତା ଅସାର ।

ନିଶି ଯାଏ ନିଶି ଆସେ ଆସେ ଉଷା ଛବି,
ଦିନ ଯାଏ ଦିନ ଆସେ, ଆସେ ନିତ ରବି ।

ପ୍ରକୃତି ବିତାନେ ଏହି ଶୁଭ୍ର ଊଷା ଛବି,
ଚିତ୍ତ ଲୁଣ୍ଠି ଯେ ତା' ଚରଣେ ମନ ଥାଉ ଲାଗି ।

ଯାଉ ଊଷା ନାହିଁ ଦୁଃଖ ଆସିବ ତ ଫେରି,
ନିଶାନ୍ତେ ପ୍ରକଟିବ ନିତି ସେ ଊଷା-ସୁନ୍ଦରୀ ।

ଏକାକୀ ମୁଁ ଏଥି ସେ ମୋ ଚିରନ୍ତନ ସାଥୀ,
ତା ବଦନ ହେରି ପ୍ରାଣେ ଫୁଟେ ରୁଦ୍ଧ ପ୍ରୀତି ।

ବିତିଯାଉ ଆୟୁ ଆହା ପ୍ରୀତି ହୃଦେ ଥାଉ,
ଏ ଜୀବନେ ନିତ୍ୟ ସତ୍ୟ ଶାଶ୍ୱତଟି ସେହୁ ।



ରଚନା କାଳ : ୪-୨-୪୩, ବ୍ରହ୍ମପୁର ଜେଲ ।

# ସ୍ନେହାଶିଷ

ଦୂରରୁ ଦୂର କାହିଁ ପଡ଼ିଛି ଶୂନ୍ୟପଥ,
ପଥିକ ପାଦ ଚହ୍ନେ ନ ପୂରେ ମନୋରଥ,
ଲଭେ ଅଚରେ ଚହ୍ନ ଗୋଟିକ ପରେ ଗୋଟି
ତା' ପରେ ଆସେ ଆନ ଏମନ୍ତେ କୋଟି କୋଟି ।

ତଥାପି ଶୂନ୍ୟ କାହିଁ ନ ଦଶେ କେହି ଜଣେ
ଚରେ ବା ସ୍ଥିରେ ଉଭା ନୁହେଁ ତ କେହି କେଣେ,
ଅସୀମ ପଥ ଖାଲି ଅନନ୍ତ ମରୁବାଲି
ଆସିବା ଲୋକ ଯାଏ କେଉଁ ବାଇକେ ଚାଲି ।

ଥିଲେ ତା' ପାଦ ଚହ୍ନ ନିମିଷେ ଯାଏ ଲୁଚି,
ତେବେ କି ରହେ କହ ସବୁ କି ଶୂନ୍ୟ-ସୂଚୀ ?
ତେବେ କି ଶୂନ୍ୟ ଏହି ସଂସାର ସୁଖଶିଖା,
ସ୍ନେହ ମମତା ପ୍ରୀତି ଅଳୀକ ସ୍ୱପ୍ନ ସବ ।

ଅନ୍ତରୁ ହେଲା ନାଦ ନାହିଁ ରେ ନାହିଁ ନାହିଁ
ଅନନ୍ତ ବିଶ୍ୱ ପିଠେ ନ ଲଭେ କିଛି କାହିଁ,
ରୂପ ଅରୂପେ ଯାଏ ଲଭଇ ପାଦଚହ୍ନ
ମାତ୍ର ଅନ୍ତର ଜ୍ୟୋତି ନୁହଇ ଲବେ ଭିନ୍ନ ।

ସ୍ୱଜନ ସ୍ନେହ ପ୍ରୀତି ଦେହୀର ଆସକତି,
ଦେହ ଆଶ୍ରୟେ ଥାଏ ଲବେ ଲଭଇ ମୁକ୍ତି,
ସରିଲେ ଇହଲୀଳା ଶରୀର ଗଲେ ଚାଲି,
ଶୂନ୍ୟରୁ ଶୂନ୍ୟ ଖାଲି ମରୁ ମରୀଚ ବାଲି ।

ବିଶ୍ୱରୁ ଏହା ମନେ ନ ଦେଖ ପରପାରେ
ତୋ ନେତ୍ର ପଥେ କାଳ ଅନନ୍ତ-ପାରାବାରେ,
ନାହିଁରେ ନାହିଁ କିମ୍ପା ଅଳୀକ ମଣୁ ମହୀ,
ଗଲେଣି କୋଟି କୋଟି ଅଖଣ୍ଡ କିଛି ରହି ।

ସେ ପୁଣ୍ୟ ବିଶ୍ୱ-ପୀଠ ସେ ପୂତ ବିଶ୍ୱ-ପ୍ରୀତି
ସକଳ ସ୍ନେହପ୍ରୀତି ତାହାର ଅଭିବ୍ୟକ୍ତି,
ଶରୀର ଯାଏ ସିନା ଅକ୍ଷୁଣ୍ଣ ରହେ ଏଥି,
ଚିର-ଜାଗ୍ରତ-ସ୍ମୃତି ଚିର ମଧୁର ପ୍ରୀତି ।

କଳୁଷହୀନ ପ୍ରାଣୁ ଝରେ ଯେ ସ୍ନେହ-ସୁଧା
ଲଭେ ତ ନାହିଁ ତହିଁ ସଂସାର ସ୍ୱାର୍ଥ ବାଧା,
ସଂସାର ହେଲେ ଶୂନ୍ୟ ସେ ରହେ ଚିର ସ୍ଥିର
ସେ ପୂତ-ପ୍ରୀତି-ସ୍ମୃତି ଅଖଣ୍ଡ ଯେ ଶରୀର ।

ସେ ଭାବେ ପୂଜିଗଲୁ ଦେଇ ଯେ ସ୍ନେହ ଅଶ୍ରୁ
ତା' ଶିରେ ବିଭୁ-କୃପା ଚିର ମଧୁରେ ବର୍ଷୁ,
ପୂତ ପବିତ୍ର ଯାହା ସେ ଥିବ କାଳ କାଳ
ନାହିଁ ତା କ୍ଷତି ଭୟ ନାହିଁ ତା ଅନ୍ତରାଳ ।

ବିଶ୍ୱ-ମାନସ ପଟେ ଚିହ୍ନିତ ଚିର ସେହି
ଲିଭିବ ନାହିଁ ଲଭେ ଗଲେ ଏ ମର ଦେହୀ,
ସେହି ବିଶ୍ୱ-ବିଭୂତି ସେଇଟି ଜ୍ୟୋତିରେଖା
ମାନବ-ହୃଦପଟେ ସେ ଏକା ଚିର ଲେଖା ।



ରଚନା କାଳ ; ୨୭-୧୦-୪୭ ।

# ସାଧ୍ୱୀର ସ୍ୱର୍ଗଯାତ୍ରା

ନରଦେହଧାରୀ ନର ସେ ଧନ ସମ୍ପଦ କୋଳେ,
ଜନମି ଜୀବନ ସମ୍ଭୋଗେ ଲୋଟି ଥାନ୍ତା ତ ଭୋଳେ;
ବାଳୁତ ବୟସେ ବାଳିକା କରେ ହୋଇଛୁ ଛନ୍ଦ
ଫୁଟନ୍ତା ଯୌବନ ପ୍ରଭାବେ ଏକ ଆନନ୍ଦରେ ବନ୍ଦୀ ।

ନରନାରୀ ବିଶ୍ୱବିଧାନେ ସିନା ଭୁଞ୍ଜନ୍ତେ ସୁଖ,
ବିପରୀତେ କମ୍ପା ପ୍ରଣୟ-ପୀଠେ ଫୁଟିଲା ଦୁଃଖ :
ସମ୍ପଦ ସମ୍ଭୋଗେ ପୁରୁଷ ନେବେ ପୌରୁଷ ନାହିଁ,
ତ୍ୟାଗ ସାଧନାରେ ପୁରୁଷାକାର ପ୍ରକାଶ ତହିଁ ।

କୁଳବଧୂ କୁଳକାମିନୀ ପ୍ରତି ପ୍ରୀତି ପୀୟୂଷେ,
ଆଶା ରଖି ପ୍ରାଣ ଝାସିଲା ସିନା ଦାସୀ ସଦୃଶେ;
ନ ଜାଣଇ ଜ୍ଞାନ ବିଜ୍ଞାନ ବିଶ୍ୱତତ୍ତ୍ୱ ବିସ୍ତର,
ସମାଜ ଶାସନ-ଶୃଙ୍ଖଳା କଳା କୂଟ ବେଭାର ।

ସଂସାରୀ ସଂସାର ଧରମେ ଦୃଢ଼ ରଖିଛୁ ମତି,
ଆର୍ଯ୍ୟ ଧର୍ମ ଆର୍ଯ୍ୟ ସଂସ୍କୃତି ପଥେ ଅଲକ୍ଷ୍ୟ ଗତି ।
ପଙ୍କଜ ପଲ୍ଲବେ ପୀୟୂଷ ବିନ୍ଦୁ ଢଳାଇ ସର,
ପତିଗତପ୍ରାଣା ହୃଦୟ-ପୀଠେ ପ୍ରଣୟ-ବାରି,

ଢଳଢଳ ଚିର ନିର୍ମଳ କାହିଁ ନ ଯାଇ ଢଳି,
ପଥ ଖୋଜ ପ୍ରିୟ ହୃଦୟ କୋଣେ ପଡ଼ିଛୁ ଝରି ।
ଏଥିକି ସିନା ତା ପ୍ରତୀକ୍ଷା ସେହି ଧ୍ୟାନ ଧାରଣା,
ଅନୁସଙ୍ଗ ତାର ସଂସାର ଭୋଗ ସୁଖ କଳ୍ପନା ।

ଗୃହ ପରିବାର ସନ୍ତାନ ସମ୍ପଦେ ଯା' ପ୍ରକାଶ,
ସଉଭାଗ୍ୟବତୀ ସେହିଟି ଯା'ର ପୂରେ ଏ ଆଶ ।
ମାତ୍ର ଏ ଲଳନା ଲଲାଟେ ବିହି ଲିହିଲ କିବା,
ପତି ହୃଦ ପ୍ରୀତି ପରଶେ ନଶି ହେଉଛି ଦିବା !

ପ୍ରୀତି ସୁଖ ଭୋଗ କଳ୍ପନା କାହିଁ ହେଉଛି ଦୂର
ପ୍ରୀତି ପ୍ରତିରୂପ ବିରତି ! ଏକ ବିଧାନ କ୍ରୂର !
ସମ୍ପଦ ସମ୍ମାନ ଆସକ୍ତି ତାରେ ଏଡ଼ୁଛି ନର,
'ଅପରିଗ୍ରହ' ତା ସାଧନ ନାହିଁ ଆପଣା ପର ।

ସମ୍ପଦ ସଞ୍ଚୟ ବାସନା କାହିଁ ଗଲାଣି ଲିଭି;
ବିଚାରଇ ନାହିଁ ସନ୍ତାନ ଧେନ କେଣିକି ଯିବ ?
ସନ୍ତାନ ସନ୍ତତି ସହିତେ ଯେବେ କଲି ସଂସାର,
ବିଷୟୁ ବିହୀନେ କେମନ୍ତେ କାହିଁ ରଚିବ ଘର !

ସଂସାରେ ଥାଇଣ ସନ୍ନ୍ୟାସୀ ସାଜେ ପୁରୁଷ ଏବେ,
ପତ୍ନୀ ବିଦ୍ୟମାନେ ହୁଅଇ ବ୍ରହ୍ମଚାରୀ ସେ ଯେବେ;
କି କରିବ ନାରୀ କାହାରେ କାହିଁ ଫେଡ଼ିବ ହିଆ,
ଅନ୍ତର ବେଦନା ଅନ୍ତରେ ସଦା ଜାଳିଲି ନିଆଁ ।



---

ଶ୍ରୀମତୀ କସ୍ତୁରବା ଗାନ୍ଧୀଙ୍କ ପରଲୋକରେ ରଚିତ ।

# ଖଣ୍ଡ ପ୍ରଳୟ

କାହୁଁ ଆସିଲା ମାଡ଼ି ଝଞ୍ଜା ପବନ,
କମ୍ପିଲା ଜଳ ସ୍ଥଳ ଗିରି କାନନ ।

ମୁଷଳଧାରେ ମେଘ ବରଷେ ନୀର,
ଝଞ୍ଜା ସଂଯୋଗେ ଯେହ୍ନେ ସୁତୀକ୍ଷ୍ଣ ତୀର ।

ଉଡ଼ିଲା ଘରଦ୍ୱାର ଘଙ୍ଗେ ସଉଧ,
କମ୍ପିଲା ଧରା ସଙ୍ଗେ ଜୀବ ମାନବ—

ପ୍ରାଣ ଆତଙ୍କେ କିଏ ପଳାଏ କାହିଁ,
କେଣିକି ଯିବେ କାହିଁ ଆଶ୍ରା ତ ନାହିଁ ।

ରାଶି ରାଶି ପାଦପ ପଡ଼ିଲେ ତଳେ,
ପୂରିଲା ତଉଦଗ ଅଗାଧ ଜଳେ ।

ଝଡ଼ି ପଡ଼ନ୍ତି ତଳେ ଅସଂଖ୍ୟ ପକ୍ଷୀ,
ଛଟପଟେ କେହି ବା ରହିଛି ଲକ୍ଷି,

ପାଦପ ଡାଳେ ପ୍ରାଣ ଯାଉଛି ଗୁଡ଼ି,
ମରି ପଡ଼ନ୍ତି କେତେ ହୋଇ କଗୁଡ଼ି ।

ବରଷା ମାଡ଼େ କେତେ ଗୋରୁ ମଇଁଷି,
ଛେଳି ମେଣ୍ଢା ଘୁଷୁରି କୁକୁର ପୁଷି ।

ମରି ଲୋଟନ୍ତି ଦେଖି ଥରଇ ହିଆ,
କାହିଁଟି ନାହିଁ ରାହା ହେବାକୁ ଠିଆ ।

ମଡ଼ମଡ଼ ଶବଦେ ପଡ଼େ ପାଦପ,
ପ୍ରଖର ଜଳସ୍ରୋତେ ବୁଡ଼ି ତଳପ ।

ଦଶଇ ସାରା ଧରା ଗଲା କି ବୁଡ଼ି,
ପ୍ରଳୟ ଧାରେ ଦିଗ ଆସେ କି ମାଡ଼ି ।

ଭୀଷଣ ଝଞ୍ଜା ବାତ ଗର୍ଜି ଆସଇ,
ଭାଙ୍ଗି ପଡ଼ଇ ଘର ଛାତ ଉଡ଼ଇ ।

ଘର ଭାଙ୍ଗିଲେ ସିନା ପାଦପ ତଳେ,
ଲୋଡ଼ନ୍ତେ ଆଶ୍ରା ଏବେ ସବୁ ତ ଟଳେ ।

ସବୁ ଆଶ୍ରା ତ ଦେଖି ଦେଖି ଭାଙ୍ଗୁଛି,
ବଜ୍ର ସମାନେ ଇନ୍ଦ୍ର ବାରି ବର୍ଷୁଛି ।

ଜନମାନବ କଏ କାହିଁ ବା ଯିବ,
ଆହା ତା' କୋଳ ପିଲା କାହିଁ ରଖିବ ।

ତଳ ଉପରେ ଜଳ ପିଟେ ପବନ,
ମାଡ଼ ବସଇ ଯେହ୍ନେ ଶର-ସନ୍ଧାନ ।

ବରଷା ମାଡ଼େ କେମ୍ପା ହେଲାଣି ଦେହ,
ଟଳି ପଡ଼ନ୍ତି ଜନେ ଦୁଃଖ ଦୁଃସହ ।

ଭାହି ଭାହି ଆସଇ ଝଞ୍ଜା ଝଙ୍କାର,
ଘଡ଼ କି ଘଡ଼ ମାରେ ବଜ୍ର ଟଙ୍କାର ।

ଦଣ୍ଡେ ଘଡ଼ିଏ ନୁହେଁ ଏ ଯେ ବିରାମ,
ବତାସେ କମ୍ପେ ଧରା ଆସିଲା ଯାମ ।

ଘୋର ଅନ୍ଧାରେ ବୁଡ଼ିଗଲା ସେ ମହୀ,
ପ୍ରଳୟ ପ୍ରୟୋଧି କି ମାଡ଼ି ଆସଇ ।

ସୃଷ୍ଟି ସଂହାର ବୋଲି ମଣିଲେ ଜନେ,
ଜୀଇବା ଆଶା ଆଉ ନାହିଁ କା' ମନେ ।

ପାହିବ ରାତି ପୁଣି ଥିବ ଏ ମହୀ,
ଏଥି ପ୍ରତ୍ୟୟ ଆଉ କାହାର ନାହିଁ ।

ମରଣ ଯେବେ ସାର କମ୍ପା କାରଣ,
ଭଙ୍ଗା ଅଭଙ୍ଗା ଘର ସବୁ ସମାନ ।

ଦି' ରାତ୍ରି ଦିନ ଦେଖୁ ଦେଖୁ ପାହିଲା,
ଦାଣ୍ଡ ପଦାଡ଼ ଜଳାର୍ଣ୍ଣବ ହୋଇଲା ।

କ୍ଷୁଧା ତୃଷାରେ କେତେ ପଡ଼ିଲେ ଝଡ଼,
ସହସା ମାଡ଼ିଗଲା ସିନ୍ଧୁ ଲହଡ଼ି ।

ପଲକେ ଗାଁ ଗଣ୍ଡା ଶୂନ୍ୟ ହୋଇଲା,
ବିରାଟ ଜନପଦ ସବୁ ବୁଡ଼ିଲା ।

ନିମିଷେ ଶତ ଶତ କୁଟୁମ୍ବ ଜନ,
ଜଳ ସମାଧି ଭଜି ହେଲେ ନିମଗ୍ନ ।

ଆନନ୍ଦ କୋଳାହଳ ସୁଖ ସଂସାର,
ପଲକେ ଲଭି ଲୋଟେ ମୁର୍ଦ୍ଦାର-ମାଳ ।

ରାତି ପାହିଲା ଝଞ୍ଜା ଗଲା ତ ଥମି,
ଦିଶେ ଚୌଦିଗ ଯେହ୍ନେ ଶ୍ମଶାନ ଭୂମି ।

ସର୍ବତ୍ର ହାହାକାର ଭୀମ ଦାରୁଣ,
ସଂହାର ଦେଖି ଦୁଃଖେ ଲୁଚେ ଅରୁଣ ।

ବିକଟ ବିଧ୍ୱସ୍ତ ଏ କରାଳ ଛବି,
ଦେଖିଲେ ଲବେ ହୃଦ ଯାଉଛି ଦ୍ରବି ।

ମଲା ସେ ଗଲା ଭଲା ଶାନ୍ତି ପାଇଲା,
ବଞ୍ଚିବା ସିନା ଏବେ କାଳ ହୋଇଲା !

ନାହାନ୍ତି ଗୋରୁଗାଈ ନାହିଁ ତା' ବାସ ।
ନାହିଁ ତ କିଛି ନାହିଁ ତୁଣ୍ଡକୁ ଗ୍ରାସ ।

କୋଳ ନନ୍ଦନ କା'ର ଲୋଟଇ ତଳେ,
ବିୟୋଗ ଦୁଃଖେ ମାଆ ରବେ ବିକଳେ ।

କା' ପତି କାହା ପତ୍ନୀ ଯାଇଛି ଗଡ଼ି,
କେ ଦେଖେ ଦୃଷ୍ଟି ଆଗେ ମୁର୍ଦ୍ଦାର-ଧାଡ଼ି ।

କାହାର ବାପା-ମାଆ ଶୂନ୍ୟ ସଂସାର,
ଛେଉଣ୍ଡ ଶିଶୁ କାନ୍ଦେ କାହିଁ କାତର ।

ସବୁ ସରିଛି ଦାଣ୍ଡେ ଗଡ଼ୁଛି ଶବ,
ଆର୍ତ୍ତେ ଡାକଇ ମୋତେ ନିଅ ମାଧବ ।

ନିଜ ରକ୍ଷଣ ଯହିଁ ନୁହେଁ ସମ୍ଭବ,
ଜୀବନ ଯହିଁ ଭାର ମଣେ ମାନବ ।

ଆନେ ଅନାଇବାକୁ କାହିଁ ନିଃଶ୍ୱାସ,
ପାଷାଣ ହୃଦେ କାହୁଁ ସ୍ପର୍ଶେ ପରାଶ ।

ଦୟା ମାୟା ମମତା ସେନେହ ପ୍ରୀତି,
ସଂହାର ବେଳେ କାହିଁ ଭଜଲେ ଖ୍ୟାତି ।

ଆତ୍ମସୋଦର ଭାବ ଏଥି ପରଖ,
ମରତ ନୁହେଁ ଏହି ଅଟେ ନରକ ।

କେମନ୍ତେ କାଳ ଦେଖ ଦାରୁଣ ଛବି,
ଲବେ ତା ହୃଦ ଆହା ନ ଯାଏ ଦ୍ରବି ?

କାହିଁ ପଡ଼ିଛି ମାଆ ବୁକୁ ଉପର—
ପଡ଼ି ସଡ଼ୁଛି ତାହା ପ୍ରିୟ କୁମର ।

କାହିଁ ଧରିଛି ଭାଇ ହାତ ଭଉଣୀ,
କାହିଁଟି ସ୍ୱାମୀ କରେ କର କାମିନୀ—

ପଡ଼ି ମରଣ ଡୋରେ ହୋଇଛି ଛନ୍ଦା,
ଦାରୁଣ ଝଞ୍ଜା ବାତେ ଅଭୁଟେ ବନ୍ଧା ।

କରାଳ କାଳ କିିୟା ଦାରୁଣ ଦୁଃଖ,
ସ୍ୱଭାବେ ଦୁଃଖୀ ଜନେ କରିଛି ମୂକ ।

ଦୁଃଖାଗ୍ନି ଶିଖା ହୃଦେ ଦିଏ ଜଳାଇ,
ନୟନୁ ଅଶ୍ରୁଧାର ଦିଏ ଶୁଖାଇ ।

ପାଷାଣ ଯେହ୍ନେ ସହେ ସକଳ ଘାତ,
ତେହ୍ନେ ହୃଦ ସହିଲା ଏ ବଜ୍ରପାତ ।

ଖଣ୍ଡ ପ୍ରଳୟ ଯେବେ ଆସିଲା ମାଡ଼ି,
ଘର ଦୁଆର ସବୁ ପଡ଼େ ଅଜାଡ଼ି ।

ନିର୍ଜ୍ଜନ ଗୁମ୍ଫାଘରେ ବନ୍ଦୀ ହୃଦୟ,
ବିକଳ ପ୍ରାଣେ ଯେବେ ହେଲା ଅଥୟ ।

ପ୍ରବଳ ପ୍ରଭଞ୍ଜନ ଲହରୀ-ମାଳେ,
ମୂଷଳ ସମ ଘନ ବରଷା ଧାରେ ।

ଦୋହଲେ ବନ୍ଦୀଶାଳ ପିଟି ସାଉଁଟି,
ମେଘନାଦ ପାଚେରି ଗଲା ଲେଉଟି ।

ସହସ୍ର ବନ୍ଦୀ କିଏ କାହିଁ ପଡ଼ିଲେ,
ଆକାଶେ ଗୃହ ବାଡ଼ ଯାଇଁ ଉଡ଼ିଲେ ।

ପ୍ରାଣ ରହିବା ଆଶା କ୍ରମେ ବୁଡ଼ିଲା,
ବ୍ରହ୍ମକୂଟ କି ଏବେ ଦାଉ ସାଧିଲା !

ବାରଣ ଭାଙ୍ଗି ସବୁ ହେଲା ସମାନ,
ଦିଶେ ଏ ବନ୍ଦୀ-ପୁର ଅର୍ଦ୍ଧ ଶ୍ମଶାନ ।

ନିବିଡ଼ ଅନ୍ଧକାର ଆସିଲା ମାଡ଼ି,
କେ କାହିଁ ଗଲେ ଘୋର ଶୀତରେ ଜାଡ଼ି ।

କ୍ଷୁଧା ତୃଷାରେ କିଏ ପଡ଼ିଲେ କାହିଁ,
ବନ୍ଧନୁ ମାତ୍ର ତିଳେ ମୁକତି ନାହିଁ ।

ବନ୍ଧୁକଧାରୀ ଯମଦୂତଙ୍କ ପରି,
ଜଗିଅଛନ୍ତି ଦାଣ୍ଡ ଭିତର ଧରି ।

ଦିଶେ ସୁଦୂର ଗିରିବନ ପ୍ରାନ୍ତର—
ଦାରୁଣ ଦୃଶ୍ୟ ନାଚେ ନେତ୍ର ପଥର ।

ଯିବାକୁ ନାହିଁ ଗୃହ ବନ୍ଦୀ ଜୀବନ,
ମରଣୁ ବଳ ସ୍ଥାନ—ଯମ ସଦନ ।

× × ×

ଦିନାନ୍ତେ ଜଡ଼ଦେହେ ପଶିଲ୍ ପ୍ରାଣ,
ଭଙ୍ଗାକୁ ଗଢ଼ି ଏବେ କରିବା ଠାଣ ।

ମାୟା ସଂସାରେ ପୁଣି ବଳିଲ୍ ଚିତ୍ତ,
ଭଙ୍ଗା ମାଟିକୁ ପୁଣି ମଣିଲ୍ ବିତ୍ତ ।

ଯେତେଦିନ ଏ ଭବେ ରହିଛି କାୟା,
କେ କି ପାରିବ ଛୁଡ଼ି ଛଳେ ତା ମାୟା ?

ମାୟା ସଂସାରେ ସୁଖ ଦୁଃଖ ଏ ବେନି
କାଟିବି କାଳ ମୁଁ ତ ସମାନ ମଣି ।



ରଚନାକାଳ ୧୫-୧୧-୧୯୪୨ : ବ୍ରହ୍ମପୁର ଜେଲ୍ ।

# କବୀନ୍ଦ୍ର ରବୀନ୍ଦ୍ର

ଯେ ଦେଶେ ଓଁକାର ଧ୍ୱନି ଉଠିଲା ଉଚ୍ଛୁଳି,
ବେଦୋପନିଷଦେ ବିଶ୍ୱ ବିଭୂତି ମଞ୍ଜୁଳି,
ଜ୍ଞାନେ ବିଜ୍ଞାନର କଳା କୋଟି କଳ୍ପତଳେ
କୁସୁମ କାନନ ସର ସରିତ ସାଗରେ ।

ଗଗନ ପବନ ଜ୍ୟୋତି ଜୀବନ ପାବକେ,
ଆଲୋକ ତାମସ ଶଶୀ ତପନ ଫଳକେ,
ଜୀବ ମାନବାତ୍ମା ପ୍ରୀତି ପ୍ରଣୟ ବିଳାସେ,
ଋତ ସତ୍ୟ ନିତ୍ୟ ସନାତନ ତତ୍ତ୍ୱାଭାସେ ।

ରୂପ ରସ କାମନା କଳ୍ପନା ସାଧନାରେ,
ବିଶ୍ୱର ବିଧାନ ବିଶ୍ୱ ସମ୍ପଦ ସତ୍ତ୍ୱରେ,
ପ୍ରକୃତି ସୌନ୍ଦର୍ଯ୍ୟ ଭୋଗ ସଂହାର ନିର୍ବାଣ,
ମାନସ ବିକାଶ ବିଶ୍ୱ ପ୍ରକାଶ ପ୍ରମାଣ—

ଅପୂର୍ବ ବାଣୀ ତୁଳିକା ଭାବର ସ୍ପନ୍ଦନେ,
ଚହଲି ଦେଲା ମନ୍ତ୍ରେ ଯନ୍ତ୍ରେ ତନ୍ତ୍ରର ସାଧନେ
ଭାଷାର ମୋହନ ବଂଶୀ ସଙ୍ଗୀତ ଝଙ୍କାରେ,
କବି କାବ୍ୟ କଳ୍ପନାର ମଧୁର ଝଙ୍କାରେ ।

କପିଳ କଣାଦ ପାତଞ୍ଜଳିଙ୍କ ପୌରୁଷୀ,
ଯହିଁ ବ୍ୟାସ ବାଲ୍ମୀକି ଗର୍ଗ ମହାଋଷି
ଯହିଁ ଶଙ୍କର ଗୌତମ ନାନକ କବୀର,
ଯହିଁ ଭବଭୂତି କାଳିଦାସ କବିବର ।

ଯହିଁ ନିମାଇ ପ୍ରେମିକ ସାଧକ ଠାକୁର
ଯହିଁ ସ୍ୱାମୀ ତ୍ୟାଗୀ ଯୋଗୀ ଭାବୁକ ଭାସ୍କର,
ଯହିଁ ଚଣ୍ଡିଦାସ ବିଦ୍ୟାପତି ବାଣୀସୁତେ,
ଗାୟନେ ବାଦନେ ଧ୍ୟାନେ ସୁଭାଷଣ ସୂତେ ।

ମାନବ କଳ୍ପନା କୋଟି କଳ୍ପର ସାଧନା,
ଜୀବର ଜୀବନଲୀଳା ବିଶ୍ୱର ସୃଜନା,
ପ୍ରକୃତିର ସ୍ୱରୁଚଛନ୍ଦେ ବିଶ୍ୱର ବିଧାନେ,
ସମ୍ମୋହିତ ପ୍ରାଣପୀଠେ କାଳର ସନ୍ଧାନେ ।

ମଧୁର ମୂର୍ଚ୍ଛନା ପ୍ରେମ-ପୁଲକ ସଞ୍ଚାରେ,
ପ୍ରକଟିତ ପ୍ରସ୍ଫୁଟିତ କରି ସୃଜଗଲେ—
ସେହି ପୀଠେ ସେହି ଗୋଷ୍ଠୀ ଦାୟାଦ ସ୍ୱରୂପେ
ଜନ୍ମିଲ ହେ କବୀନ୍ଦ୍ର ରବୀନ୍ଦ୍ର ଅନୁରୂପେ ।

ଅତୀତର ଆର୍ଯ୍ୟପୀଠେ ଜ୍ଞାନ ପାରାବାରେ,
ସନ୍ତର ଗମ୍ଭୀର ଗର୍ଭ ମଣି ରତ୍ନ ହାରେ,
ମଣ୍ଡିଲ ବିଶ୍ୱ-ଭାରତୀ ବିଶ୍ୱ ପର୍ଯ୍ୟଟନେ,
ବିଶ୍ୱର ସକଳ ସୃଷ୍ଟି ଗୋଷ୍ଠୀ ଦରଶନେ ।

ଜ୍ଞାନର ଗମ୍ଭୀର ତତ୍ତ୍ୱେ ସରଳ ସଙ୍ଗୀତେ,
ଗ୍ରାମ୍ୟପ୍ରାଣ ଗ୍ରାମ୍ୟ ଲୀଳା ଖେଳା ଗ୍ରାମ୍ୟ ଛନ୍ଦେ,
ସରଳ ତରଳ ମଞ୍ଜୁ ବାଣୀ-ବୀଣା ତାନେ,
ବିଶ୍ୱ-କଳ୍ପନା ସମ୍ପଦ ପ୍ରକୃତି-ବିତାନେ ।

ପ୍ରାଚୀ ପ୍ରତୀଚୀ ସମାଜ ଶୁଦ୍ଧ ସାରସତ୍ତ୍ୱ,
ମାନବ କଳ୍ପିତ ସୃରୁକଳା ସରସତା,
ନବ୍ୟ ପୁରାଣ ପ୍ରାଚୀନ ଜୀବନ ସରଣୀ,
ସୁଖ ଦୁଃଖ ପ୍ରେମ ପ୍ରୀତି ମଧୁର ତରଣୀ ।

ବାଳ ଧୂଳି ଖେଳୁ ବିଜ୍ଞାନର ବିଶ୍ୱସେବା,
ଶିଶୁର ସୁହାସ ଯୁବ ତରୁଣ ପ୍ରତିଭା,
କାମିନୀର କଳକଣ୍ଠ ପ୍ରଣୟ ପିପାସା,
ବ୍ୟଥିତ ହୃଦୟ କୁଟା କାମନା ନିରାଶା ।

ପ୍ରେମିକ ଭାବୁକ ଶ୍ରମେ ସରଳ ସାଧକ,
ସ୍ୱଦେଶ ସମାଜ ମୁକ୍ତି ଭକ୍ତିର ଶଳାକ ।

ସବୁର ସ୍ୱଭାବ ଶୋଭା ଫୁଟାଇଲ କବି,
ଲଳିତ ମଧୁର ବାଣୀ-ପଟେ ବିଶ୍ୱଛବି;
ବିଶ୍ୱପୀଠେ ଗ୍ରହରାଜ ରବି ରଶ୍ମି ଯଥା,
ସବୁରେ ଆଲୋକଦାୟୀ ପ୍ରକାଶ-କରତା ।

ତୁମ୍ଭେ ହେ କବୀନ୍ଦ୍ର, ଗୁରୁ ପୂର୍ଣ୍ଣ ବିଶ୍ୱ ସୃଷ୍ଟି,
ସର୍ବସ୍ୱ ସଞ୍ଚାର ତୁମ୍ଭ କବି ଜ୍ଞାନ ଦୃଷ୍ଟି,
ଅପୂର୍ବ ଅଶେଷ ଛନ୍ଦେ ସୌନ୍ଦର୍ଯ୍ୟ ପ୍ରକାଶ,
କରି କରାଇଲ ଭାବ-ରାଜ୍ୟ ସ୍ୱପ୍ରକାଶ ।

ବାଣୀ-ପୀଠେ ଚିତ୍ର-ପଟେ ବୀଣାର ଝଙ୍କାରେ
କାବ୍ୟ କବିତା ନାଟକ ଅଭିନୟାକାରେ,
ଚିତ୍ରିଲ ହେ ଚିତ୍ରକର ଗୁରୁ ତୂଳି ଚିତ୍ରେ,
ବିଶ୍ୱ ବିମୋହନ ସୁଧା ସଙ୍ଗୀତେ ବିଚିତ୍ରେ ।

ବିଶ୍ୱର ସୌନ୍ଦର୍ଯ୍ୟ ଭୋଗ ପ୍ରାଣ ଉପଯୋଗେ,
ଭାବର ମାଧୁରୀ ମଧୁ ମାନସ ସମ୍ଭୋଗେ,
ଉଚ୍ଚାରି ପ୍ରଚୁର ଗାଇ ବାଇ ଦେଇଗଲ,
ବାଣୀ-ବରପୁତ୍ର ତୁମ୍ଭେ ମର୍ତ୍ତ୍ୟ-ବିଦ୍ୟାଧର ।

ଭାବର-ବିଭୋଗ-ଭଙ୍ଗି ଭବ-ଚିତ୍ର-ପଟେ,
ତୁମର କାବ୍ୟ-କବିତା ସଙ୍ଗୀତେ ପ୍ରକଟେ ।
ସୁଖରେ ବୈରାଗ୍ୟ, ତୁମ୍ଭେ ଦୁଃଖରେ ସମ୍ଭୋଗ,
ଚଞ୍ଚଳେ ଅଚଳ, ପୁଣି ଭେଦରେ ଅଭେଦ ।

ମାୟାରେ ଅମର ତତ୍ତ୍ୱ, ଶୂନ୍ୟତାରେ ସତ୍ୟ,
ଭ୍ରାନ୍ତିରେ ଅଭ୍ରାନ୍ତ, ଅଶାନ୍ତିରେ ଶାନ୍ତି ତଥ୍ୟ,

ନିରାଶାରେ ଆଶା, ଦୁଃଖୀ ସନ୍ତାପେ ସାନ୍ତ୍ୱନା,
ପତ୍ର-ପୁଷ୍ପ-ଲତା କୁଞ୍ଜେ ପ୍ରାଣର ବେଦନା ।

ଅସାର ସଂସାର ଶୀଳେ ସୁଧାର ସରିତ,
କରାଳ ଆହବେ ଦିବ୍ୟ ମୁକ୍ତିର ସଙ୍ଗୀତ,
ଦାସତ୍ୱ ଦଳନେ ଦୃପ୍ତ ସ୍ୱାଧୀନ ଶକତି,
ଖର ଖରସାଣୁ ଦୃପ୍ତ ମାନବ-ସଂହତି,

ଆପଣା ପ୍ରୀତିରେ ବିଶ୍ୱ-ପ୍ରୀତି ଉଦ୍ଦୀପନା,
ଆପଣା ସୌଷ୍ଠବେ ବିଶ୍ୱ ସୌଷ୍ଠବ କଳ୍ପନା,
ଜ୍ଞାନରେ ବିଶ୍ୱ-ଗୌରବ, ତ୍ୟାଗେ ତାପସତା,
ସବୁରେ ସତ୍ୟ-ସମ୍ଭୋଗ ଭୋଗେ ସରସତା ।

ତୁମରି ରଚିତ ମଞ୍ଜୁ ମଧୁର ସଙ୍ଗୀତେ,
ତୁମରି ଚିତ୍ରିତ ଶୁଭ୍ର ଭାବ-ଚିତ୍ର-ପଟେ,
ତୁମରି କଳ୍ପିତ କଳ୍ପ କାବ୍ୟ-କଳାଧାରେ,
ତୁମରି ନିଭୃତ ବିଶ୍ୱ-ଭାରତୀ ଝଙ୍କାରେ ।

ଫୁଟାଇଛ କବି ଯୋଗୀ ଭୋଗୀ ହେ ମୁନୀନ୍ଦ୍ର,
ବିଶ୍ୱରେ ଯଥାର୍ଥ ତୁମ୍ଭେ କବୀନ୍ଦ୍ର ରବୀନ୍ଦ୍ର ।
ପୂଜାର ସମ୍ଭାର କାହିଁ ତବ ଯୋଗ୍ୟ କବି,
ସ୍ୱ-ଭାବେ ପୂଜିତ, ଯଥା ରଶ୍ମି ରାଗେ ରବି ।

ବିଶ୍ୱର ବୈଚିତ୍ର୍ୟ ସେହି ମାନବ ମମତା,
ପତ୍ର ପୁଷ୍ପ ଲତା କୁଞ୍ଜେ ପ୍ରାଣେ ସରସତା,
ଜୀବୁ ଜୀବାନ୍ତରେ ଯାଉଁ ଜୀବର ବିକାଶ,
ବିଳୟେ ବିଭୂତ ଦିବ୍ୟ ବ୍ରହ୍ମ ରୂପାଭାସ ।

ପ୍ରୀତିର ମଧୁର ମୂର୍ଚ୍ଛନାରେ ଢଳ ଢଳ,
ମାନବ-ହୃଦୟ ଶୁଦ୍ଧ ସତ୍ୟ ପରିମଳ;
ମଳିନତା ଶୂନ୍ୟ ସେହି ବିଶ୍ୱମୟ ପ୍ରୀତି,
ତୁମ୍ଭର କଳ୍ପନା ଚିତ୍ରେ ଅଭୟ ଅଭ୍ରାନ୍ତ ।

ଅରୂପେ ଦେଇଛ ରୂପ ଅପରୂପ ଆହା !
ଅନନ୍ତ ଅପୂର୍ବ ଜ୍ୟୋତିର୍ମୟ ବିଶ୍ୱନାହା,
ତାଙ୍କର ଆଲୋକେ ଫୁଟେ ଯେ ବିଶ୍ୱ ପ୍ରକୃତି
ତା' ସୌନ୍ଦର୍ଯ୍ୟ ଅନୁଭବି ପରଂବ୍ରହ୍ମ ତୃପ୍ତି ।

ଓଁ କାରେ ଉଚ୍ଚାରିଗଲ ସତ୍ୟ ସନାତନ;
କବୀନ୍ଦ୍ର ରବୀନ୍ଦ୍ର ତୁମ୍ଭେ ଚିର ବିଦ୍ୟମାନ ।



ରଚନା କାଳ ୭-୮-୪୩ ; ବ୍ରହ୍ମପୁର ଜେଲ୍ ।

# ଧବଳେଶ୍ୱର

ଦ୍ୟୁଲୋକ ଭୂଲୋକ ନାଗଲୋକ ପରପାରେ,
ସୃଷ୍ଟି ସ୍ଥିତି ସଂହାରଣ ସଂଭବଇ ଯାରେ ।

ସର୍ବତ୍ୟାଗୀ ସର୍ବଜ୍ଞାତା ରୂପେ ଯାରେ ଗୌରୀ
ପ୍ରାପ୍ତି ଆଶେ କୋଟିଯୁଗ ତପୋନଳେ ମୌଳି ।

ତାପସ ବଧିରେ ଶକ୍ତି ଦେଲେ ପ୍ରକଟାଇ,
ତ୍ରିଭୁବନ ନାଥ ସେହ୍ନ ତ୍ରିଅମ୍ବକେ ଧ୍ୟାୟି ।

ଶିରରୁ ତାଙ୍କର ଦିବ୍ୟ ଘନରସ ଧାରେ,
ଯେ ଗଙ୍ଗା ପ୍ରସର ମର୍ତ୍ତ୍ୟେ ଜୀବନ ସଞ୍ଚାରେ ।

କାହିଁଗଲେ ମାତଭବେ କେତେ ଧାରେ ବହି,
କଳରେ ଉତ୍କଳେ ତାରେ ଚତ୍ରୋତ୍ପଳା କହି ।

ସୁଲୋମା ନେତ୍ର ସଂଭୂତ 'ମହାନଦୀ' ଧାର,
ବ୍ରହ୍ମାରେ ବର୍ଣ୍ଣିତ 'ବଧୂସର' ନାମ ଯାର ।

ସେହ୍ନ ଗଙ୍ଗା-ଚତ୍ରୋତ୍ପଳା ନାମେ ପୁଣ୍ୟୋତ୍କଳେ,
ଅଦୃଶ୍ୟ ଶିଖରୀମାଳୁ ନିର୍ଝର ଭୂତଳେ ।

ଧୂର୍ଜଟି ଶିଖର ପୁଣ୍ୟ ଗାଂଗତୋୟ ଧାରେ,
କଳି-କଳୁଷ ନାଶିନୀ ଯାଉଁ ପାରବାରେ ।

ପଥେ ଖରସ୍ରୋତ ତେଜି କାହିଁ ଧୀରଗବେ,
ନିବିଡ଼ ଗମ୍ଭୀର ଘନ ଗଣ୍ଡ ଗର୍ଭୁ ଘରେ ।

ନିବେଶି ଖୋଜିଲ ଭବେ ଧୂର୍ଜଟି ଚରଣ,
କଳି କଳୁଷିତ ତନୁ ସଂସ୍କାରେ ଶରଣ ।

ଅଶେଷ ଗିରିଗହ୍ୱରେ ବନରାଜିମାଳେ,
ବ୍ୟାକୁଳିତ ଆଲୋଡ଼ନେ ଶତଛିନ୍ନ ଧାରେ ।

ଗ୍ରାମ ଉପକଣ୍ଠେ କାହିଁ ଶିଖରୀ ଶିଖରେ
କାହିଁ ବା ପାତାଳ-ସ୍ପର୍ଶୀ ନିବିଡ଼ ଗହ୍ୱରେ ।

ଖୋଜି ଖୋଜି 'କଳୈଗଙ୍ଗା' ଚଣ୍ଡିତ-ପାବନୀ,
ଚନ୍ଦ୍ରୋପଳା ଶ୍ୟାମଗିରି କାନନ ଶୋଭିନୀ ।

ଯୋଜନ ଯୋଜନ ସ୍ରୋତ ଅନ୍ତହୀନ ଶେଷେ,
ଦେଖିଲି ଭୂଲୋକୁ ଭିନ୍ନ ପୁଣ୍ୟୋଜ୍ଜ୍ୱଳ ଦେଶେ ।

ଶ୍ୟାମଳ ଅଟବୀ ବିମଣ୍ଡିତ ଶୈଳଶୃଙ୍ଗ,
ବିଜନତା ବିମୋହନେ ନଭଃଚୁମ୍ବୀ ତୁଙ୍ଗ ।

କୁସୁମ ବିତାନେ ଗନ୍ଧ ମଳୟ ହିଲ୍ଲୋଳେ,
ସେବିତ ସୁଗନ୍ଧୁ ଶୁଭ୍ର ବାରିଦ କଲ୍ଲୋଳେ ।

ବିହଙ୍ଗ ସଙ୍ଗୀତେ ସଦା ଦେବସ୍ତୁତି ଗାନେ,
ମୁଖରିତ ମର୍ତ୍ତ୍ୟ ବାଧା ନ ଥାଏ ସେ ସ୍ଥାନେ ।

ସୁଦୂରେ ଅସଂଖ୍ୟ ଦୁର୍ଗ ବେଷ୍ଟିତ ନଗର
ମାନବ ସେବିତ ପୁରି ଭୀମ ରଣସ୍ଥଳ—

ସେ ସକଳ ମର୍ତ୍ତ୍ୟଲୀଳା କୋଳାହଳୁ ଦୂରେ,
ଗନ୍ଧର୍ବ ରାକ୍ଷସ ନାମ କିନ୍ନର ଅସୁରେ ।

ଯହିଁ ସ୍ତୁତିଗାନ ସ୍ୱର୍ଗ ସୁର ବିଦ୍ୟାଧରେ,
ସେବିତ ପବିତ୍ରୀକୃତ ପୂତ ଶିଳାମ୍ବରେ—

ତହିଁ ଶ୍ରୀନିବାସ ରଚିଛନ୍ତି ଶୂଳପାଣି,
ସୃଷ୍ଟି ସ୍ଥିତି ସଂହାରର ସ୍ୱର୍ଗୀୟ ତ୍ରିବେଣୀ ।

ଆନନ୍ଦେ ଅଧୀରା ଦେବୀ ଗିରୁ ଚନ୍ଦ୍ରୋପଳା,
ଗିରୀଶ-ଚରଣ ସ୍ପର୍ଶ କାମନା-ବିହ୍ୱଳା ।

କି ସଙ୍କେତେ ଭୃଙ୍ଗଶୈଳ ଶିଖେ ପୀଠମଣି,
ଡାକିଲ ଆତୁରେ ଗିରି ବେଢ଼ା ପରିକ୍ରମି ।

ଦେବ ଦେବ ଶିତିକଣ୍ଠ ହେ ପିନାକ-ପାଣି,
ଦେବ ଦେବ ମହାଦେବ ଆହେ ଶୂଳପାଣି ।

ଗଙ୍ଗାଧର ତ୍ରିପୁର-ଅନ୍ତକ ଚନ୍ଦ୍ରଚୂଡ଼,
ତ୍ରିଲୋଚନ ତ୍ରିଅମ୍ବକ ସ୍ମର ହର ମୃଡ଼ ।

ବିଶ୍ୱେଶ ବିଶ୍ୱ ଭବନାଶ୍ରୟ ବିଶ୍ୱରୂପ,
ଶ୍ରୀଚରଣ ବିଶ୍ୱେ, କିବା ଉତ୍ପଳ ସ୍ୱରୂପ ?

ସର୍ବସ୍ୱ ଏ ଶୈଳମାଳ ଅଣୁ ପରମାଣୁ,
ପରିବ୍ୟାପ୍ତ ଯେଣୁ ଉମାପତି ନାମ ସ୍ଥାଣୁ ?

ଦେଖାଅ ଧୂର୍ଜଟି ତବ ପୁଣ୍ୟ ପୂର୍ଣ୍ଣରୂପ,
ତୁମରି ମହିମାବଳେ ବିରୂପ ସ୍ୱରୂପ ।

କରି ଧବଳେଶ ନାମେ ଯହିଁ ସ୍ମରହର,
ଅପାର କରୁଣା ଦାନେ ତ୍ରିପୁର ଉଦ୍ଧର ।

ସ୍ତୁତିଗାନେ ତପୋପୂତା ତ୍ରସ୍ତ ଶୈଳଶିଳା,
ପରଶି ପୁଲକେ ଜ୍ୟୋତିଧାରେ ପ୍ରକାଶିଲ ।

ଟଳିଲ ଆସନ ପ୍ରଭୁ ଦେବ ଦେବଙ୍କର,
ବୋଇଲେ ଗୋ ତପୋପୂତେ ମର୍ତ୍ତ୍ୟ ଗଙ୍ଗାଧାର ।

ଶୈଳଶିଖେ ଗଭୀର ଗହ୍ୱରେ ଏଥିବାସ,
ରଚିଲି କଳରେ ମୁହିଁ, ଶୈଳେ ସ୍ୱପ୍ରକାଶ ।

ଏଥି ମର୍ତ୍ତ୍ୟ ଜନେ ତବ ଗାଙ୍ଗତୋୟ ନୀରେ,
ପାପତାପମୟ ହିୟା କଳୁଷ ବିଧିରେ ।

ତ୍ରଖ୍ୟାଳ, ମୋ ଭକ୍ତଜନେ ଦିଅ ଶୁଭବୁଦ୍ଧି,
କରନ୍ତୁ ତୋ ନୀରେ ମୋର ଅଭିଷେକ ଶୁଦ୍ଧି ।

ଚିର ସ୍ରୋତସ୍ୱିନୀ ଶୃଙ୍ଗରୁ ଚନ୍ଦ୍ରୋତ୍ପଳା ତୁହି,
ତୋ ଗର୍ଭେ ନିବାସ କରି ରହିଲଇଁ ମୁହିଁ ।

ଶୈଳ ଶିଖ କନ୍ଦର ମଧ୍ୟରେ ମୋ ବିଗ୍ରହ,
ନିବିଷ୍ଟ ଗୁପତ ସ୍ରୋତେ ତୁ ତହିଁ ପ୍ରବାହ ।

ସେହିଦିନୁ ଧବଳେଶ ବିଗ୍ରହ ଚରଣ
ଗୁପ୍ତ ସ୍ରୋତେ ଚନ୍ଦ୍ରୋତ୍ପଳା ଧୁଏ ଅନୁକ୍ଷଣ ।

× × ×

ଦିନେ ପାନ୍ଥ ଏକ ନିଜ ଗୋଧନ ସଂଗତେ,
ଦଧିଗ୍ରାମେ ଯାଉଁ ବାଟେ ମୋଷକ ପୁରତେ—

ପଡ଼ି ଡାକ ଦେଲା ପ୍ରଭୋ ରଖ ମହେଶ୍ୱର,
ଗୋଧନ ସମ୍ବଳ ମୋର ହରିନିଏ ଚୋର ।

କହଇ ତା ଗାଈ କଳା ମୁଁ କରିଛି ଚୋରି,
ଜାଣତ ସର୍ବଜ୍ଞ ତୁମେ ଗୋଧନ ମୋହରି ।

କଳା ଗାଈ ଧଳାକରି ରଖ ମୋର ମାନ,
ବିପଦୁ ଉଦ୍ଧର ପ୍ରଭୋ ଦୁରିତନାଶନ ।

ଭକ୍ତ ଡାକ ଶୁଣି ଶୈଳପତି ଶୂଳପାଣି,
ପଲକେ କଳାକୁ ଧଳା ଗୋଧନ ପ୍ରମାଣି ।

ରକ୍ଷାକଲେ ଆର୍ତ୍ତଜନ ସମ୍ପଦ ଗୋଧନ,
ସେ ଦିନୁ ଧବଳେଶ୍ୱର ନାମ ପ୍ରକାଶନ ।

ଲକ୍ଷ ଲକ୍ଷ ଆର୍ତ୍ତଜନ ସେ ନାମ କୀର୍ତ୍ତନେ,
ପାପତାପ ଦୁଃଖୁ ତରିଯାନ୍ତି ଦରଶନେ ।

ପୁଣ୍ୟ ଚନ୍ଦ୍ରୋତ୍ପଳା ନୀରେ ଅଭିଷେକ କରି,
ରୋଗଶୋକମୟ ଭବ ଦୁଃଖୁଁ ଯାନ୍ତି ତରି ।

କଳିରେ  ଉତ୍କଳେ ଏହା କୈଳାସ କନ୍ଦର,
ପତିତପାବନୀ ଗଙ୍ଗା ଚନ୍ଦ୍ରୋଜ୍ଜ୍ୱଳା ନୀର ।

ତୀର୍ଥଶ୍ରେଷ୍ଠ ଏହି ପୀଠ ପୁରାଣେ ପ୍ରସିଦ୍ଧି,
ଶରଣାପନ୍ନ ଲଭଇ ମରଦେହେ ସିଦ୍ଧି ।



---

ରଚନା କାଳ ୮ । ୬ । ୪୩ ; ବ୍ରହ୍ମପୁର ଜେଲ ।

# ବ୍ୟୋମଯାନ ଦର୍ଶନେ

ରକ୍ତ ପଥେ ଶୂନ୍ୟ ରଥେ ଯାତ୍ରୀ ଚଳେ ଅଗ୍ନିଶିଖେ,
ରୁକ୍ଷ ପ୍ରାଣେ ବଜ୍ର ହାଣେ ଶତ୍ରୁ ଶିରେ, ଧ୍ୱଂସ ଦେଖେ ।

କ୍ଷିପ୍ର ପଦେ, ତିକ୍ତ ହୃଦେ, ତୀବ୍ର ହିଂସା କ୍ରୋଧ ଭରେ,
ସିକ୍ତଧରା, ଅତ୍ୟାଚରେ, ଶୂନ୍ୟ ହବୁ ବକ୍ଷ ଥରେ ।

କୋଟିକଣ୍ଠୁଁ ଆର୍ତ୍ତନାଦ ଉଚ୍ଚେ ଉଠେ କମ୍ପେ ହିଆ;
ହା ହା ମୃତ୍ୟୁ! ଆଶ୍ରାବନୁ ନଗ୍ନରୂପେ ସର୍ବେ ଠିଆ ।

ଶୋଷଣର ବିଭୀଷିକା ସ୍ୱର୍ଣ୍ଣଭୂମି ଚୂର୍ଣ୍ଣକର,
କ୍ରୂର-କୂଟ ଯନ୍ତ୍ରା ସୂତ୍ରେ ଯାଚଜାତ ଶୌର୍ଯ୍ୟ ହର ।

ଧର୍ମ ନେଲ, କର୍ମ ନେଲ; ସାର କଲ ଦାସବୃତ୍ତି;
ଆର୍ଯ୍ୟଜାତି ବୀର୍ଯ୍ୟହୀନ; ସଭ୍ୟତାର ଲୁପ୍ତସ୍ମୃତି ।

କ୍ରୂର-ଅସ୍ତ୍ର- ପୁଷ୍ଟ-ଶକ୍ତି- ବର୍ବରତା ବିଶ୍ୱଗ୍ରାସେ,
ଶଠଶିଷ୍ଟ, ବିଷମିଷ୍ଟ, ଭଣ୍ଡତାର ଖରଶ୍ୱାସେ ।

ଧରା ଜୀର୍ଣ୍ଣ, ଧର୍ମ ଶୂନ୍ୟ; ଦୈତ୍ୟ ଲୀଳା ଦର୍ପେ ତୃପ୍ତି,
ସାମ୍ୟ ନାହିଁ ମୈତ୍ରୀ ନାହିଁ, ଦୟା ନାହିଁ, ନାହିଁ କ୍ଷାନ୍ତି ।

କାହିଁ ଖ୍ରୀଷ୍ଟ କାହିଁ ବୁଦ୍ଧ କାହିଁ ସତ୍ୟ କାହିଁ ଶୁଦ୍ଧ ।
କାହିଁ ପ୍ରୀତି, କାହିଁ ଶାନ୍ତି, କାହିଁ ମୁକ୍ତି- ମନ୍ତ୍ର-ଶବ୍ଦ ।

ଶୂନ୍ୟ ସବୁ, ସୁପ୍ତ ପ୍ରଭୁ, ଦୀପ୍ତ ଆଜ କ୍ରୁଦ୍ଧ ଲୁବ୍ଧ,
ଦୈତ୍ୟାବଳୀ ବହ୍ନି ଢାଳି ଗର୍ଜି ଡାକେ ଯୁଦ୍ଧ ଯୁଦ୍ଧ ।

ଦୈତ୍ୟକୁଳେ ଧ୍ୱଂସବେଳେ ଶୁଭ୍ରସୌଧ ଚୂର୍ଣ୍ଣକର,
କୋଟିପ୍ରାଣ ଲକ୍ଷଗ୍ରାମ ବଜ୍ରବାଣେ ଢଏ ଠାଳ ।

ଗ୍ରାମ ଗର୍ବେ ରୌରବ ରବେ ଯାତ୍ରୀଗୃହେ ସୈନ୍ୟ ବେଶେ,
ବିଶ୍ୱ ଜିଣି, ନଷ୍ଟେ ରଣେ ଭୋଜ୍ୟ ରୂପେ ଭୋଗ୍ୟ ଶେଷେ ।

ବିଜ୍ଞାନର ଜ୍ଞାନଗର୍ବେ ଦୃପ୍ତତାର ଅହଂଭାବ,
ଶୁଷ୍କତାର ଶିକ୍ଷା ଦୀକ୍ଷା ଧର୍ମ ତାର ସ୍ୱାର୍ଥଲାଭ ।

ଯୁଦ୍ଧ-ଭୂମେ କ୍ରୂର କର୍ମେ ଯୋଦ୍ଧା ଧର୍ମେ ଦେଇଛନ୍ତି ଦଳି,
ଶୌର୍ଯ୍ୟମଣେ ଅମ୍ଳାନେ ସୁପ୍ତଜନେ ହତ୍ୟାକରି ।

ଅର୍ଦ୍ଧ ଯାମ, ସୁପ୍ତଜନ, ସୌଧକୋଳେ, ସୁଧାଧାରେ,
ଚନ୍ଦ୍ରାଲୋକେ ବିଶ୍ୱଶାନ୍ତ ପୂତଧାରେ ବୃଷ୍ଟି କରେ ।

ଉଦ୍ଭାସିତ ଆଲୋକ ସେ ବିଶ୍ୱରୂପ କାନ୍ତଶାନ୍ତ,
ନଦୀ-ଗୀତ ମୂର୍ଚ୍ଛନାରେ ଅଧଉର୍ଦ୍ଧ୍ୱ ବିମୋହିତ ।

ଶୁଭ୍ର ଜ୍ୟୋତି ବିମଣ୍ଡିତ ନୀଳନଭେ ଶୂନ୍ୟପଥେ,
କୋଟି ତାରା, କୋଟି ଗ୍ରହ ଆଲୋକର ଅବିରତେ ।

ଧରାଭୂମେ ଶାନ୍ତପ୍ରାଣେ ବିଶ୍ୱପ୍ରେମ କ୍ରୀଡ଼ା କରେ,
ସ୍ତବ୍ଧ ଧରା କ୍ଷାନ୍ତକରି ବାସନାର କୋଳାହଳେ ।

ମାନବର ଶତ ଦୁଃଖ- ଶତ ଚିନ୍ତା- ନିର୍ବାସିତ,
ମୁକ୍ତଧରା ହିଂସାଦ୍ୱେଷୁଁ ସାମ୍ୟଶାନ୍ତ ଉଦ୍ବେଳିତ ।

ଆସିଲେକି ଚିନ୍ତାମଣି ଚଞ୍ଚଳତା ଦୂରକରି,
ଗାମ୍ଭୀର୍ଯ୍ୟର ଶାନ୍ତମୂର୍ତ୍ତି ବିଶ୍ୱପୀଠେ ଅବତରି ।

ସୃଷ୍ଟି ନୁହେଁ କ୍ଷୁଦ୍ର ତଳେ ପ୍ରାଣବନ୍ତ ବିଶ୍ୱସାରା,
ଦ୍ୱନ୍ଦ୍ୱ ମୋହୁଁ ମୁକ୍ତମାନ; ପୂର୍ଣ୍ଣବେଗେ ପ୍ରେମଧାରା ।

ପ୍ରକ୍ଷାଳିତ ମାନବ ତ ବିଶ୍ୱଯଜ୍ଞେ ବିହ୍ୱଳିତ ।
ବିଶ୍ୱ-ପୀଠେ ମର୍ତ୍ତ୍ୟ-ଜନେ ସ୍ୱର୍ଗ-ସୁଖେ ବିମୋହିତ ।

ଆହା ! ଚିର- ତୃପ୍ତି ସୁଧା ମୁଗ୍ଧ-ବିଶ୍ୱ ରହିଥାନ୍ତା,
ବିଶ୍ୱସ୍ରଷ୍ଟା କର୍ମେ କେହି କ୍ରୂର ହସ୍ତ ନ ଲଗାନ୍ତା ।

ଚିରକାଳ ଶୋଭୁଥାନ୍ତା ଅଚୂର୍ଣ୍ଣ ଏ ପୂର୍ଣ୍ଣମହୀ,
ଅଖଣ୍ଡିତ ସୌନ୍ଦର୍ଯ୍ୟ ତା' ବିଶ୍ୱଜନେ ହୋନ୍ତେ ମୋହି ।

ଦିବ୍ୟ ଚିତ୍ରେ ଚିତ୍ରୁଥାନ୍ତା ମାନବତା ତୂଳୀ ଦେଇ,
କବିତାର କଳ୍ପନାରେ ଚାରୁକଳା ବୃଦ୍ଧି ଫେଇ ।

ସୁନ୍ଦରରୁ ସୁନ୍ଦର ସେ ଦିଶୁଥାନ୍ତା ଦିନୁଦିନ,
ଢିଳେହେଲେ ·ସେ ସୌନ୍ଦର୍ଯ୍ୟ ନୁହନ୍ତାଟି କେବେ କ୍ଷୁଣ୍ଣ ।

ଏଥିରେ ହିଁ ମାନବୀୟ ସଭ୍ୟତାର ପରାକାଷ୍ଠା,
ପ୍ରକଟିତ ବିଶ୍ୱେ ହୋନ୍ତା ମୁଗ୍ଧ ହୋନ୍ତେ ବିଶ୍ୱସ୍ରଷ୍ଟା ।

ମାତ୍ର କାହିଁ ମନୁଷ୍ୟର ପବିତ୍ର ସେ ଶୁଦ୍ଧବୁଦ୍ଧି,
ହିଂସା ଗର୍ବେ ଜର୍ଜରିତ ସ୍ୱାର୍ଥଭୋଗେ ମଣେ ସିଦ୍ଧି ।

ଅସରନ୍ତି ସମ୍ପଦରେ ସୁଦ୍ଧା ନାହିଁ ତାର ତୃପ୍ତି,
ମାରି ଶୋଷି ଚୂର୍ଣ୍ଣ କରି ଆତ୍ମ-ସୁଖେ ମଣେ ମୁକ୍ତି ।

'ଜାଗ୍ରତ' ସେ ଜର୍ଜରିତ ଏହିଭାବେ ପଶୁବଳେ,
କ୍ଷିପ୍ର ହେବ କମ୍ପେ ମହୀ ତା'ର କ୍ରୂର କର୍ମଫଳେ ।

ଶାନ୍ତ-ଶୁଭ୍ର ନଗ୍ର ପୃଷ୍ଠେ ଯାମିନୀର ଅନ୍ତରାଳେ,
ଶୂନ୍ୟ ରଥେ ସୈନ୍ୟବେଶେ ସେଇ ଆସି ବଜ୍ର ମାରେ ।

ମୁହୁର୍ମୁହୁଃ ଅଗ୍ନିବୃଷ୍ଟି ବିଷଜ୍ୱାଳା ଉଦ୍‌ଗାରଇ;
ଶାନ୍ତ ଶୁଭ୍ର ସୌଧଶ୍ରେଣୀ ନିମିଷେକେ ଚୂର୍ଣ୍ଣହୋଇ ।

ଧୂଳି ସ୍ତୂପ ରୂପେ ହେଲେ ଦେଖ ଠିଆ 'ବୀର' ଆରେ,
ଲକ୍ଷଶିଶୁ ଲକ୍ଷନାରୀ ଲକ୍ଷନର ରକ୍ତଧାରେ—

ସିକ୍ତମହୀ ମୁଣ୍ଡମାଳା ଲୋଟେ ଦୃଶ୍ୟ ଭୟାବହ,
ଆର୍ତ୍ତନାଦେ କମ୍ପେ ଧରା କି ଦାରୁଣ କି ଦୁଃସହ !

ମାତ୍ର ତୋରେ କୌତୂହଳ କ୍ରୀଡ଼ାପରି ଲାଗେ ସବୁ,
ଆର୍ତ୍ତ ଦୁଃଖେ ଗର୍ବିତ ତୁ ତୃପ୍ତି ପାଉ ଶିଶୁ ଶବୁଁ ।

ଯେ କୋମଳ ଶିଶୁଖେଳେ ଦୂରପ୍ରାନ୍ତେ ନନ୍ଦନଝରେ,
ଯେ ସୁନ୍ଦରୀ ନାରୀ ସ୍ନେହେ ବିଶ୍ୱଖେଳେ ପ୍ରେମଭୋଳେ ।

ଯେ ପବିତ୍ର ମାତୃସ୍ନେହ ବିଶ୍ୱକରେ ସୁଧାମୟ,
ଯେ କୁଟୀରେ ଗୃହୀ ମଣେ ଧରାଧାମେ ଦିବ୍ୟାଳୟ ।

ଯେ ସଂସାର ଶୂନ୍ୟପ୍ରାଣେ ପୂର୍ଣ୍ଣତାକୁ ମୂର୍ତ୍ତି ଦିଏ,
ଜନ୍ମଭୂମି ବୋଲି ଯହିଁ ଏ ମାନବ ଶାନ୍ତିପାଏ ।

ସେ ପବିତ୍ର ମନୋହର ସଂସାର ତୁ ଚୂର୍ଣ୍ଣକର,
ଶୌର୍ଯ୍ୟମଣି ଗର୍ବ କରୁ ବିଶ୍ୱେ ଦେଖି ଧ୍ୱସ୍ତଶିର !

ଜ୍ଞାନଗର୍ଭୁଁ ଜ୍ଞାନଗର୍ବେ ଗତି ତୋର କି ବିଚିତ୍ର !
ଧ୍ୱଂସ ଯାହା ବିନିଯୋଗ ବିଜ୍ଞାନର ସୂକ୍ଷ୍ମସୂତ୍ର !

ଜ୍ଞାନ ନୁହେ ବିଶ୍ୱ-ଶିର ବିଶ୍ୱ-ହିଂସ୍ରା ଧ୍ୱଂସ କର
ଜ୍ଞାନ ନୁହେ ମର୍ତ୍ତ୍ୟପୀଠେ ନର୍କଲୀଳା ସୃଷ୍ଟି କାର ।

ଜ୍ଞାନ ନୁହେ ନୀଚ ସ୍ୱାର୍ଥ ନଗ୍ନକ୍ରୋଧ ଦର୍ପସେବୀ,
କଳ୍ପେ ନାହିଁ ଜ୍ଞାନ କେବେ ଉଚ୍ଚ ନୀଚ ଭୋଜ୍ୟ ଭୋଗୀ ।

ଜ୍ଞାନୁ ଆସେ ସାମ୍ୟଭାବ ବିଜ୍ଞାନେ ତା' ଅଭିବ୍ୟକ୍ତି,
ବିଜ୍ଞାନର ବିଶ୍ଳେଷଣେ ଜ୍ଞାନୀ ଦେଖେ ବିଦ୍ୟୁଶକ୍ତି ।

ବିଶ୍ୱମୟ ବିଦ୍ୟୁଜ୍ଜ୍ୟୋତି ପ୍ରାଣପୀଠେ ପ୍ରଜ୍ୱଳିତ,
ସୂକ୍ଷ୍ମ ଅଣୁ ପରମାଣୁ ଅନ୍ତର୍ଦ୍ଦେଶେ ସୁନିହିତ ।

ବିଜ୍ଞାନରୁ ଜ୍ଞାନୀ ଯିନା ସାମ୍ୟଧର୍ମ ଶିକ୍ଷା କରେ,
ସାମ୍ୟ-ଜ୍ଞାନୁ ପ୍ରାଣପୀଠେ ମୈତ୍ରୀପ୍ରୀତି ଅନ୍ତେ ସ୍ଫୁରେ ।

ଧ୍ୱଂସ ହତ୍ୟା କ୍ରୂରକର୍ମେ ଜୀବ-ଧର୍ମ କ୍ଷୁଣ୍ଣ ହୁଏ,
ଧର୍ମ-ହୀନ ବୁଦ୍ଧି-ବଶୁ ଭୋଗ-ଲିପ୍ସା ବୃଦ୍ଧି ପାଏ,

ଲିପ୍ସା ଏକା ମାନବର ସ୍ୱାର୍ଥବୁଦ୍ଧି ଉଦ୍ରେକରେ,
ସ୍ୱାର୍ଥ ଏହି ଆହବର ମୂଳମନ୍ତ୍ର, ଧର୍ମଚୂରେ ।

ଗୋଷ୍ଠୀଭାବ ଜାତି-ଗର୍ବ ସ୍ୱାର୍ଥରଚି ବ୍ୟାଘ୍ରରୂପ,
ଗର୍ବବଶୁ ଦୈତ୍ୟ ଆଜି ମର୍ତ୍ତ୍ୟେ ଚରେ ଧ୍ୱଂସ ସ୍ତୂପ,
ଦମ୍ଭଭର ଅହଂଭାବ ଶୌର୍ଯ୍ୟନାମେ କ୍ରୂରକର୍ମେ,
ଧ୍ୱଂସଲୀଳା ସୃଷ୍ଟିକରି ତିକ୍ତ କରେ ବିଶ୍ୱଜନେ;

ମର୍ତ୍ତ୍ୟପୀଠେ ପୃଥ୍ୱୀବ୍ୟାପୀ ଯୁଦ୍ଧ-ବହ୍ନି ଦୀପଶିଖା,
ଗର୍ବୀ-ଦୈତ୍ୟ ଗୋଷ୍ଠୀ-ବୁକୁ ଧ୍ୱଂସିଦେବ ଖାମ ଧକ୍କା ।

ବହ୍ନି ଯେବେ ସିକ୍ତ ହେବ ରକ୍ତ-ଧାରେ ଲୁପ୍ତତେଜ,
ଛିନ୍ନ ହେବ ଅହଂଭାବ ଚୂର୍ଣ୍ଣହେବ ଶୌର୍ଯ୍ୟବୀର୍ଯ୍ୟ ।

ରଥନେମି କାଳପୁଣି ନଷ୍ଟେ ନେବ ପ୍ରତିଶୋଧ,
ଅତ୍ୟାଗ୍ରହୀ ବକ୍ଷଚକ୍ର, ବିଶ୍ୱଦେଖି ହେବ ସ୍ତବ୍ଧ ।

ବିଜ୍ଞାନର ବ୍ୟଭିଗୁର ଲୁପ୍ତହେବ, ଶୁଦ୍ଧରୂପେ-
ଉଦ୍ଭାସିତ ହେବ ଦିନେ ଜ୍ଞାନଦୀପ ସର୍ବଭୂପେ ।

ଶାନ୍ତ ଦିନେ ବାହୁଡ଼ିବ ବିଶ୍ୱଦିନେ ହାସ୍ୟ-ମୁଖେ—
ଦେଖିବ ସେ ଯାତ୍ରୀ ତୋରେ ଭଗ୍ନବେଶେ ଶୂନ୍ୟପଥେ ।
ସୈନ୍ୟ ନୋହି ସେବକ ତୁ ହେବୁ ଦିନେ, ବିଶ୍ୱଜନ—
ସତ୍ୟ ଶୁଦ୍ଧ ସାମ୍ୟ ଧର୍ମେ ପରସ୍ପରେ ଆଲିଙ୍ଗନ—
କରିବେରେ ପ୍ରତ୍ୟାଗମି ଦୁଃଖୀଦୁଃଖେ କ୍ଳେଶୀ କ୍ଳେଶ,
ମୁକ୍ତହେବ ସର୍ବହରା ଦାସତ୍ୱର ସର୍ବଶେଷ ।
ଗୋଷ୍ଠୀଭାବ ଜାତିଗର୍ବ ରାଜ୍ୟ ଲିପ୍ସା ସ୍ୱାର୍ଥ-ସଂସ୍ଥା,
ଲୁପ୍ତକରି ଦୀପ୍ତହେବ ସାମ୍ୟମୈତ୍ରୀ ଧର୍ମ-ପନ୍ଥା ।

ବିଶ୍ୱପୀଠ ଉଜ୍ଜ୍ୱଳିବ ଉଦ୍ବେଳିତ ବିଶ୍ୱ-ପ୍ରାଣେ,
ଶାନ୍ତ ସତ୍ୟ ବିରାଜିବ, ତୃପ୍ତହେବେ ବିଶ୍ୱ-ଜନେ,
ଶୂନ୍ୟ-ରଥେ ସୈନ୍ୟବେଶେ କାହିଁ ଯାଉ ଯାତ୍ରୀ କହ,
କର୍ଣ୍ଣେ ଶୁଣ ଶୂନ୍ୟ ଡାକେ- କ୍ଷାନ୍ତହୁଅ— କ୍ଷାନ୍ତ ହୁଅ ।

---

**ରଚନାକାଳ : ୭-୨-୪୩**

# ପ୍ରଣୟ-ତାପସ

ବିଶ୍ୱପଥେ ବସନ୍ତର  ସମୀରଣ ସ୍ରୋତେ
ଭାସି ଆସି ମୁଦ୍ରିତ ନୟନେ,
ଡାକିଲି ଆକୁଳ ପ୍ରାଣେ  ବିଶ୍ୱର ନିଭୃତ କୋଣେ
ବିଶ୍ୱପତେ ! କି ନିର୍ଦ୍ଦେଶ ବିଶ୍ୱ ନିକେତନେ
ଯିବି ! ପଥ ଦିଅ ନାଥ, ଅନନ୍ତ ଅୟନେ ॥ ୧ ॥

କିଏ ସେ କହିବ ?  ମୁଁ ବା ଶୁଣିବି କେମନ୍ତେ !
କାଳସ୍ରୋତେ ବହୁଦୂର ଭାସି,
ହେଲିଣି ଜଡ଼ ଅଶକ୍ତ  ମର୍ତ୍ତ୍ୟର ଏ ଗୁପ୍ତପଥ
ଅଜ୍ଞାନ ଅନ୍ଧାର ମଧ୍ୟେ ହେଲି କାରାବାସୀ,
ସତେ କି ଫେଇବ ମୋର ଦୁଃଖ-ଅମା-ନିଶି ॥ ୨ ॥

ଫିଟିଲା ମୋ ନେତ୍ର,  ଦେଖେ ଅପୂର୍ବ ସଂସାର
ଦିବ୍ୟଧରା, ଅନନ୍ତ ଗଗନ,
ନୀଳାମ୍ବୁ ସାଗର-ଶିରୀ  ଶ୍ୟାମଳ-ଶୈଳ-ଶିଖରୀ
ଶୁଭ୍ର ରବି, ଶୁଭ୍ର ଛବି, ଶ୍ୟାମ ଘନବନ
ଶୀତଳ ଚନ୍ଦ୍ରିକା, ଶୁଭ୍ର ତୁଷାର-ପତନ ॥ ୩ ॥

ସରିତର ଶୁଭ୍ରଧାରା  ଶୁଭ୍ର ତାରାରାଜି
ଶ୍ୟାମକୁଞ୍ଜେ ସୁମନ ସମ୍ଭାର,
ଅଗଣିତ ଜୀବରାଶି  ହୃଦୟ-ଉଲ୍ଲାସେ ଭାସି,
ବିହରନ୍ତି, ବିରାଜନ୍ତି ନାହିଁ ପାରାବାର,
ମୁଁ ଅବା ରହିବି କାହିଁ କେଉଁ ପରକାର ॥ ୪ ॥

ପ୍ରଣୟିନୀ ପ୍ରଣୟର     ପରଶନେ ଆହା
ସୁପ୍ତ ପ୍ରାଣ ଏ ପୀୟୂଷ ଧାରେ,
ବହିଥିଲୁ ବିଶ୍ୱରେ ଯେବେ     ରହୁ ସେ ମହତ୍ତରେ ତେବେ
ପ୍ରଣୟିନୀ ପ୍ରେମମୂର୍ତ୍ତି ପ୍ରକୃତି ଆଧାରେ,
ତୋର କୋଳେ ଆଶ୍ରା ଦିଅ ଉଚ୍ଚ ପାରବାରେ ॥ ୫ ॥

ଅମୃତର ଧାର ପିଇ     ଖେଳିଲି ଯତନେ,
ନାରୀ କୋଳ ପ୍ରିୟ ସନମାନ,
ସୁନ୍ଦରେ ଗଢ଼ିଲି ତନୁ     ଶ୍ୟାମ କୁଞ୍ଜେ ଦିନୁ ଦିନ,
ବିହରି ବିସୋରି ଦେଲି ଅନନ୍ତ ଧିଆନ,
ପ୍ରଣୟ ଜନମ ଯେଣୁ ପ୍ରେମ ମୋ ପରାଣ ॥ ୬ ॥

କାହିଁ ମାତା, କାହିଁ ପିତା,     କାହିଁ ବନ୍ଧୁଜନ
ସବୁ ମୋର ପ୍ରଣୟ ପ୍ରସାର,
ଶ୍ୟାମଳ-ସୁଷମା-ରାଜି     ଅଶେଷ ସୁମନେ ସାଜି
ପ୍ରାଣ ପୀଠେ ଜାଳିଦେଲେ ପ୍ରଣୟ-ସମ୍ଭାର,
ସରବେ ସର୍ବତ୍ର ମୋରେ ପ୍ରେମର ଆଧାର ॥ ୭ ॥

ସଜାଡ଼ିଲି ହିଆ ତହିଁ     ସାଇତିଲି ଭାଷା,
ଗଢ଼ିଲି ମୁଁ କଳ୍ପନାର ଘର,
ପଢ଼ିଲି ପ୍ରଣୟ ଗୀତି     କହିଲି ପ୍ରଣୟ ଉକ୍ତି,
ରୋଗ ଶୋକ, ଅନାହାର, ସୁଖଦୁଃଖ ଜର
ଶିଖିଲି ଅଛଇ ସବୁ ପ୍ରେମ-ରୂପାନ୍ତର ॥ ୮ ॥

ସାଜିଲି ପ୍ରଣୟ ବେଶ     ଯୌବନ ସମ୍ଭାରେ,
କଳ୍ପନାରେ ବିଳସିଲି ଧରା,
ହୃଦୟେ ପ୍ରୀତି-ଚପଳା     ଚଳଚଉଳେ କଲା ଖେଳା
ଉଦ୍ଦାମ ଆବେଗଭରେ ବହିଯିବ ପରା,
କାହିଁ ଯିବୁ ସାରା ସୃଷ୍ଟି ପ୍ରଣୟ-ପସରା ॥ ୯ ॥

ଗ୍ରାମୁ ଗ୍ରାମାନ୍ତରେ ପୁଣି ବନ ବନାନ୍ତରେ
ପ୍ରେମାବେଶେ ଖୋଜିଲି ମୁଁ ବାସ,
ବିଚିତ୍ର ଏ ପ୍ରେମ ପଥ ନୁହଇ କାହିଁରେ ତୃପ୍ତ
ଲୋଡ଼ିଲି ପ୍ରଣୟ ମନ୍ତ୍ରେ ହେଉ ମୋ ନିବାସ,
ଜପିବି ମୁଁ ପ୍ରେମମନ୍ତ୍ର ପ୍ରଣୟ-ତାପସ ॥ ୧୦ ॥

ନୀରବେ ନିଭୃତେ ମୁହିଁ କରିବି ଆଶର,
କାହିଁ କେତେ ରହିଛି ତ ବାଧା,
କେ ଜାଣି କି ଗୁପ୍ତଘାତ ଠାଳଦେଲ ଶତବୃତ୍ତି,
ବିସ୍ମରିଲି ବିଧିଷିକାମୟ ଅବା ଏହା,
ଗଢ଼ିନେବି ନିଜେ ନିଜ ପାଇଁ ନବ ରାହା ॥ ୧୧ ॥

ଶ୍ୟାମ ଭୃଙ୍ଗ ଶୈଳ ପଦେ ତଟିନୀର ଛାରେ,
ବିଶ୍ୱମାତା ପ୍ରେମମୟୀ ପାଶ,
ଅନନ୍ତ ମଣି ଅନ୍ତର ହୃଦୟେ ପ୍ରେମ ମନ୍ତ୍ରର,
ଜପି ମୁଁ ରଚିଲି ମୋର ପ୍ରଣୟ-ନିବାସ,
ଅପରୂପ-ଦେବ-ହୃଦ-ପ୍ରଣୟ-ପ୍ରଭାସ ॥ ୧୨ ॥

ଜଗତ ମଣ୍ଡଳ ନାରୀ ପ୍ରେମ-ସ୍ୱରୂପିଣୀ
ପ୍ରଣୟର ଜୀବନ୍ତ-ନିବାସ
ଅଙ୍ଗେ, ରଙ୍ଗେ, ଭାଷାଛଳେ, ଚକ୍ଷୁର ଲୋତକ-ଜଳେ
କିବା ଗତି, କିବା ନୀତି, ହାସ ପରିହାସ,
ସବୁଟି ପ୍ରୀତି-ସୁଷମା ପ୍ରଣୟ ଆଭାସ ॥ ୧୩ ॥

ଚନ୍ଦ୍ରିକା-ଉଜ୍ଜ୍ୱଳ ଅବା ଗୃରୁ ଉଷା-ଛବି,
ସୁମନର ଅପୂର୍ବ ସୁବାସ,
ପିକ କଣ୍ଠ କଳ ଗୀତି ଜୀବର ଅପୂର୍ବ ପ୍ରୀତି,
ସବୁଟି ପ୍ରଣୟ ପୀଠେ ରଚିଲେ ନିବାସ,
ବିଶ୍ୱର ସୁଷମା ଶିଖି ତା ହୃଦେ ପ୍ରକାଶ ॥ ୧୪ ॥

ପ୍ରଣୟିନୀ ପ୍ରେମମୟୀ  ପ୍ରୀତି-ସ୍ୱରୂପିଣୀ,
ତୁହି ଏକା ସୃଷ୍ଟିର ସମ୍ଭାର,
ତୋ କୁନ୍ତଳ ନୀଳ ଘନ  ଚନ୍ଦ୍ରିକା ତୋର ଆନନ
ବାହୁ ତୋ ବଲ୍ଲରୀ, ହସ୍ତ କୋମଳ କହ୍ଲାର,
ତୋ ହୃଦେ ଖେଳଇ ରଙ୍ଗେ ଅପୂର୍ବ ପ୍ରକାର ॥ ୧୫ ॥

ତୋ ଚରଣେ ବିଶ୍ୱଚନ୍ଦ୍ର,  ତୋ ଝଲକରେ ଉଷା,
ତୋ ଅଙ୍ଗରେ କୁସୁମ ସୁବାସ,
ତୋ ଚିବୁକେ ପ୍ରେମରସ  ତୋ ନେତ୍ର ଅଟେ ନବଷ
ପିକ-କଣ୍ଠ-କଳଗୀତି-ତୋ ଅପୂର୍ବ ଭାଷ,
ତୋ ରଙ୍ଗ ଅଧରେ ଫୁଟେ ବିଶ୍ୱ ସୁଧାହାସ ॥ ୧୬ ॥

ତୋ ହୃଦେ ରହିଛି ପୂର  ପ୍ରେମାମୃତ ଧାର,
ତୋ ବିରହେ ଅସୀମ ବିଷାଦ,
ତୋ ସ୍ନେହେ ସୃଷ୍ଟିର ଲୀଳା  ପ୍ରେମାବେଶେ ଉଚ୍ଛୁଳିଲା
ହୃଦେ ମୋ ଆନନ୍ଦ ନାହିଁ ନ ଦଶେ ପ୍ରମାଦ,
ପ୍ରଣୟ-ତାପସ ମୁହିଁ ପୂଜଇ ତୋ ପଦ ॥ ୧୭ ॥



ରଚନାକାଳ : ଅକ୍ଟୋବର ୧୯୨୭ ।

# କୁମାର ବନ୍ଦନା

କୁମୁଦ ବାନ୍ଧବ ଦେବ
ଶଶାଙ୍କ ହେ ସୁଧାକର,
କ୍ଷୀର ଅର୍ଣ୍ଣବ ସମ୍ଭୂତ
ଓଷଧୀଶ ନିଶାକର,

ଦିବ୍ୟ ଶଙ୍ଖ ତୁଷାରାଭ
ତାରା ଗଣସ୍ୱ ପୟୋଧି,
ସୁଧାଂଶୁ ରମ୍ୟରସିକ
ଶୁଦ୍ଧାଗୃତିସ୍ୟ ଭକ୍ତନିଧି,

ବିଶ୍ୱଜ୍ଞାନାନ୍ଧ ନାଶକ
ଯୋଗୀ ଯୋଗାନନ୍ଦ ପ୍ରିୟ,
ଭକ୍ତପ୍ରୀତି ସୁଧାସିନ୍ଧୁ
ଶୀତାଂଶୁ ତାମସହ୍ରୀୟ ।

ସୃଷ୍ଟିସ୍ଥିତ୍ୟନ୍ତ କାରକ
ବ୍ରହ୍ମାବିଷ୍ଣୁ ଶିବତ୍ମକ
ହୃଦ୍‌ଧ୍ୱାନ୍ତ ପ୍ରତିହାରକ
ସୂର୍ଯ୍ୟଭ୍ରାତ ସମାସକ,

ଧ୍ୱାନ୍ତ ସନ୍ଦେହ ନାଶକ
ଜ୍ଞାନାଜ୍ଞାନ ପ୍ରଦାୟକ,
କୁଳାବ୍‌ଜାତ ସୁଧାପ୍ରାଙ୍ଗ
ହାର କୁଣ୍ଡଳ ଧାରକ ।

ମନୋଜନ ରଥାରୂଢ଼
ହୃଦରାଜ କଳାନିଧି,
ବ୍ରହ୍ମରୂପ ସ୍ୱରୂପାଙ୍ଗ
ଶୁଭ୍ରାଂଶୁ ଶିବସନ୍ନିଧି;

ଶିରଦେଶ ଶିରଶୋଭା
ହିମାଂଶୁ ହେମ ବିଭୂତି,
ଶୀତମଳୟ ସଂପ୍ଲୁତ
ହିମରଜ ସମଦ୍ୟୁତ ।

ସୁଧାପ୍ରୀତି ସମାଯୁକ୍ତ
ବିକୀର୍ଣ୍ଣ କିରଣ ଧାର,
ସର୍ବଦେବ ଶୁଭାଶୀଷ
ବିତର ପ୍ରାର୍ଥୀ କୌମାର ।



ରଚନାକାଳ : କୁମାର ପୂର୍ଣ୍ଣିମୀ ୧୩-୧୦-୪୩

## ଚିରବିରହିଣୀ

ମୋ ମର୍ମ ସଙ୍ଗୀତ ଗାଅ କିଏ ଦୂରେ ମୁଁ ତ ଚିର ବିରହିଣୀ,
ବୁଡ଼ିଛି ମୋ ଆଶା, ଲିଭିଛି ମୋ ଭାଷା, ମୁଁ ଚିର ହତଭାଗିନୀ ।

ଅନାଥ କି ଆଶେ ହେ ଦୂର ଅତିଥି,
ବିଗ୍ରହ କି ଚିତ୍ତେ ମୁଁ ବାରଯୁବତି
ମୁଁ ନୁହେଁ କୁମାରୀ ନେବ ମନଚୋରି
ଫିଙ୍ଗି ଅପାଙ୍ଗ ଗୃହାଣୀ । ୧ ।

ନାହିଁ ମୋ କୁନ୍ତଳେ କୁମାରୀ ଲକ୍ଷଣ
ମୁଁ ନୁହେଁ ତ୍ରିଣୟୀ-ତ୍ରିଣୟ ରତନ
ମୋ ଭାଲେ ସିନ୍ଦୂର ନାହିଁ ହେ ସିନ୍ଦୂର
ମୁଁ ପର ବ୍ରହ୍ମଚାରିଣୀ । ୨ ।

ଛିଃ, ଛିଃ, ଯାଅ ଦୂରେ ନ ଅନାଅ ବାରେ,
ମୁଁ ଯିବି ଲେଉଟି ଦୂର-ଅନ୍ତରାଳେ,
ନ ହସେ ତ ଆଉ କି ଦେଖିଲ କାହୁଁ
ଏ କି ସ୍ୱପନ-ଭ୍ରାନ୍ତିଲେଣି । ୩ ।

କୁଳପତି-କୁଳ କୁଟୀରେ ମୋ ଖେଳ,
ଦୁଃଖିନୀ ଜନନୀ କୁଟୀର ସମ୍ବଳ,
ବାଲ୍ୟତ ମୋ ତନୁ ଆହା ସେହ୍ନଦନୁ
ଆନ କୁଟୀରେ ଦେଲେଣି । ୪ ।

ମୁଁ ନୁହେଁ କାମିନୀ ମୋ ହୃଦୟ କିଣି,
କିଏ ନେଲା କାହୁଁ ନ ପାରିଲି ଜାଣି,
କହ ହେ ସବିତା ମୋ ହୃଦ ଦେବତା
କେଉଁ ରାଇଜେ ଗଲେଣି । ୫ ।

ତୁମ କୋଳେ ହେଲେ ଅମଳ କମଳ
କୁତୁହଳେ ଖେଳେ ଦୋଳାଇଣ ଜଳ,
ବଧୂ କୋଳେ ଖେଳେ କୁମୁଦମା ହେଲେ
ମୁଁ କା-ପ୍ରେମ-ଭିଖାରଣୀ ? । ୬ ।

ମୋ ଅନ୍ତରେ ଅଛି ଅସୀମ ବାସନା
ମୋ ଅଙ୍ଗେ ରହିଛି କାମିନୀ-କାମନା,
ମୋ ହୃଦୟେ ପ୍ରୀତି ରଖିଛି ଯାଇତି
ମୁଁ ଅଟେ ନବ ତରୁଣୀ । ୭ ।

ମଳୟେ ତାର ଫୁଟି ଉଠେ ତୋର,
ମୋ କୁନ୍ତଳେ ଫୁଲ ଖଞ୍ଜି କେଉଁ କେଉଁ,
ରଚନ୍ତି ସେ ଶୋଭା କେଉଁ ମନଲୋଭା
ରସନ୍ତେ କା ପ୍ରାଣ ମଣି । ୮ ।

ମୋ ବାହୁ ବାହୁଟି ଆଣନ୍ତି ଲେଉଟି
ମୋ କରେ କଙ୍କଣ ନଅନ୍ତି ପାଲଟି,
ମୋ ଅଧରେ ହସ ଫୁଟାନ୍ତି ସରସ
କରିବ ଏ କାହା ଧେନ ? । ୯ ।

ଫୁଲ ରସେ ଅଳି ପ୍ରେମ ବଶେ ଢଳି,
ପ୍ରେମିକ ପ୍ରେମିକା ପ୍ରେମେ କୋଳାକୋଳି,
ମୋ ଚିବୁକ-ରସ ମୋ ଉରସ-ବାସ
ଲୋଡ଼ିବେ କ ହେବି ପୁଣି ? । ୧୦ ।

ଲତିକେ ତୁ ତରୁ ଅଙ୍ଗେ ରଙ୍ଗେ ରହି,
ତୋ ପତ୍ର ପଣତ କାହା ଦୋହଲାଇ,
ବାଞ୍ଛୁ ପ୍ରେମଭରେ ତୋ ପ୍ରଭୁ ପଦ୍ମରେ
ହେଲେ ମୁଁ ତା ନାହିଁ ଜାଣି । ୧୧ ।

ଆହା ଗୋ ତୋ କୋଳେ ଝୁଲୁ ବିମ୍ବଫଳ,
ଦୋଳାଇ ଖେଳାଉ ସ୍ନେହେ ଢଳଢଳ,
ବିଶୂନ୍ୟ ମୋ କୋଳ ଥିବ କାଳ କାଳ
ମୁଁ ତ ନୁହେଁ କଳଙ୍କିନୀ । ୧୨ ।

ତଟିନୀ ! ଗଲଣି ତୋ ଯୁବା ବୟସ
ତେବେ ହେଲେ ଧାଉଁ ତୁ ସାଗର ପାଶ,
ମୁଁ ଯିବି କା ପାଶେ ଅବା କେଉଁ ଦେଶେ
ଶୂନ୍ୟ ଏ ସାରା ମେଦିନୀ । ୧୩ ।

ତରୁକୋଳେ ବସି ଚକୋର ଚକୋରୀ
ନିଶି ଅବସାନେ ମିଳନ ମାଧୁରୀ,
ସୁଖେ ଚଞ୍ଚୁପୁଟେ, ମୋ ହୃଦ ପ୍ରକଟେ
ଅସୀମ ଦୁଃଖ କାହାଣୀ । ୧୪ ।

ନିକୁଞ୍ଜ କୁଟୀରେ କୁଳବାଳା ବସି
ତୋ ପ୍ରିୟ ପରଶେ ପୁହାଇବୁ ନିଶି,
ମୁଁ ଗଗନେ ରହୁଁ ଲୋତକ ବୁହାଇ
ଯାପିବି ଝୂର ଯାମିନୀ । ୧୫ ।

ପିନ୍ଧି ଝୀନବାସ ପ୍ରଣୟୀଙ୍କ ପାଶ,
ରଚିବୁ ତୁ ଶଯ୍ୟା ସୁନ୍ଦର ସୁବାସ,
ବିରହ ବେଦନା ବିସୋରି ନବୀନା
ହେବୁ ତୁ ଅଭିସାରିଣୀ । ୧୬ ।

ମୁଁ ରଚିବି ଶଯ୍ୟା ତପ୍ତ ଧୂଳିପରେ,
ମୋ ଅଙ୍ଗେ ମୁଁ ବାସ ଜଣାଇବି ହେଲେ,
ଧୂଳିର ମୋ ତନୁ ଧୂଳି ମଣି, ମନୁ
ବିସୋରିବି ସୁଖ-ଶ୍ରେଣୀ । ୧୭ ।

ସରୋବର ତୀରେ ସଜନୀଏ ବସି,
ନିଶିବାସ-ରସ ଭାଷୁଥିବେ ହସି,
ମୁଁ ମଉନେ ତହିଁ ଲୋତକ ବୁହାଇ
ଦେବି ମୋ ହୃଦ-ସରଣୀ । ୧୮ ।

ଶଚୀପତି ଶଚୀ ସଙ୍ଗେ ଅଛି ବସି
ସୁର-ପୁର-ଶୋଭା-ସାଗରେ ବିଳସି
ଅପ୍ସରୀ ସଙ୍ଗୀତ ତାନେ ବିମୋହିତ
ଅମର ଯୁଗଳ-ପ୍ରାଣୀ । ୧୯ ।

ବୃନ୍ଦାବନ ଶୋଭା ନିକୁଞ୍ଜ ରସିକ
ଅସୁମାରି ଗୋପୀ ଚିତ୍ତଚୋର, ଠକ,
ତେବେ ନାହିଁ ତୃପ୍ତି ରାଧା ପ୍ରେମେ ମାତି
ବିରାଜ ଯୁଗଳେ ପୁଣି । ୨୦ ।

କି କହିବି କାନ୍ଦେ ହୃଦ ରଘୁବୀର,
ନିର୍ବାସନେ ସୀତା ସଙ୍ଗେ ଘେନିଗଲ,
ରକିତେ ମେଦିନୀ ଭସାଇଲ ପୁଣି
ସବୁ ତ ଜାନକୀ ଘେନି । ୨୧ ।

ସ୍ୱୟଂ ନାରାୟଣ ଲକ୍ଷ୍ମୀ ତୁଲେ ଥାଅ,
ବିଶ୍ୱବ୍ୟାପୀ ତୁମେ ଏ ଦୃଶ୍ୟ ଦେଖାଅ,
ମୁଁ ଯେ ବୁଡ଼ିମରେ ବିରହ ସାଗରେ
ମୁଁ କି ଦୁଷ୍କୃତ-କାରିଣୀ ? । ୨୨ ।

ଶୁଭକର୍ମେ ପୁଣି ମୋର ନାହିଁ ସ୍ଥାନ,
ସଂସାର ଛେନ୍ଦେ ମୋ ଚିର ଅପମାନ,
ହତଶିରୀ ନାରୀ ବୋଲି ଦୂର କରି
ଢିଅନ୍ତି କୁଳ କାମିନୀ । ୨୩ ।

କହ କେଉଁ ଦୋଷେ ଏ ଦଣ୍ଡ ବହିଲୁ ?
କଳଙ୍କ କାଳିମା କେବେ କ ଦେଖିଲୁ !
କ୍ରୂରକର୍ମା ବହି ଥିଲୁ ଘଟିଲେ ଲହି
ହେବ ବୋଲି ଅଲକ୍ଷଣୀ । ୧୪ ।

ହେ ପ୍ରାଣେଶ ! ଆସି ଶୂନ୍ୟପଥେ ଭାସି,
ନିଅ କୋଳେ ତୁମ୍ଭ ଏ ଦୁଃଖିନୀ ଦାସୀ,
ଅନନ୍ତେ ଅନ୍ତର ମିଶିଯାଉ, ମୋର
ଏ ଦେହ ଧରୁ ଧରଣୀ । ୧୫ ।



# ମରଣେ ଅମର ଯେହୁ

ମରିଥାନ୍ତା ସେ ତ ଯଥା ମରୁଛନ୍ତି କେତେ
ମରନ୍ତି ସକଳେ ଯେହ୍ନେ ମୃତ୍ୟୁ ଉପଗତେ,
ମୃତ୍ୟୁ କା'ର ମାତୃକୋଳେ କା'ର ବାଲ୍ୟକାଳେ
ଯୌବନ ସମ୍ଭ୍ରମେ କା'ର ପ୍ରଣୟ ସଙ୍ଗରେ ।

ଯୁଗଳ ଜୀବନୁ କା'ର ତରୁଣୀ ବୟସେ,
ମରଣେ ବିଦାୟ କେହୁ ଚଳଇ ନଭସେ,
ସଂସାର ବିଭବ ଭୋଗୁ ଜଡ଼ିତ ଚରଣେ,
ପ୍ରଣୟିନୀ ପ୍ରଣୟୀ ବିଚ୍ଛେଦ ଅଭିମାନେ ।

ସସ୍ନେହେ ପାଳିତ ପ୍ରିୟ ସନ୍ତାନ ସନ୍ତତି—
ଅବା ଛାଡ଼ିଯାଏ, ଦୁଃଖ-ଚିହ୍ନିତ-ପରିଣତି,
ପିଚ୍ଛିଳ ଉଦ୍‌ଭ୍ରାନ୍ତ ପ୍ରୀତି, ବିଷୟ ବାସନା,
ଅହଂଭାବେ ପରିପୁଷ୍ଟ ପ୍ରଭୁତ୍ୱ କାମନା ।

ଦାରିଦ୍ର୍ୟ ପୀଡ଼ିତ ନିର୍ଯ୍ୟାତିତ ଯେ ଜୀବନେ,
ସୋଦର ଦୁଃଖରୁ ମଣଇ ଶ୍ରେୟ ତା' ମରଣେ ।
ଉଦାସୀ ଯେ ଅସାର ଦେଖଇ ଧରାଭୋଗ,
ଅନାସକ୍ତେ ମରଣ ବରଇ ଯେବା ଯୋଗେ ।

ମାତ୍ର ମୃତ୍ୟୁ ଉପଗତେ ଧରିଥାଏ ବୁକୁ—
ମୃତ୍ୟୁ-ଭୟ ନ ଯାଏଁଟି ଜ୍ଞାନବନ୍ତ ଠାରୁ ।
ବିଳାସ ବିଭୋଗେ କିଏ ପ୍ରଭୁତ୍ୱ-ଗରବେ;
ବିଭୋରେ ବିସୋରେ ମୃତ୍ୟୁ ବିଷୟ ସୌରଭେ ।

ଗଳିତ ପଳିତ କେଶ ସ୍ଥବିର ଚରଣ
ଦୃଷ୍ଟିହୀନ କ୍ଲିଷ୍ଟ ଦେହେ ଉପେକ୍ଷେ ମରଣେ ।

ମାତ୍ର ମୃତ୍ୟୁ ସହସା ନ ଆସି ତଳେ ତଳେ
ଏହି ଭାବେ ପୀଡ଼ି ହରନଏ କେତେବେଳେ ।

ଅନିଚ୍ଛାରେ ମରଣ ଗ୍ରାସଇ କଳେବର,
ନୁହେ ଏ ଜୀବନ ଯେଣୁ ଅଜର ଅମର ।
ମାୟା ମୁଗଧ ଅଟେ ଯେଣୁ ମାନବ ଜୀବନ,
ଖଣ୍ଡ-ଛିଦ୍ର ହୁଏ ତା'ରେ ଚନ୍ତ୍ରଲେ ମରଣ ।

ଶମନ ଶ୍ମଶାନ ଚିତା ଚନେ ବିଭୀଷିକା,
ମୃତ୍ୟୁ-କାମୀ ହୃଦେ ସୂଜା ଦଅଇ ସେ ଦକା ।
ତେଣୁ ଇହଲୋକେ କେହି ନୁହେ ମୃତ୍ୟୁଞ୍ଜୟ,
ଭୌତିକ ସୃଜନ ନୁହେଁ ଅଜେୟ ଅକ୍ଷୟ ।

× × ×

ମରିଥାନ୍ତା ସେ ତ ଯଥା ମରୁଛନ୍ତି କେତେ,
ମରିବେ ସକଳେ ଯେହ୍ନେ ମୃତ୍ୟୁ ଉଠଟେତେ,
ମାତ୍ର ତା ମରଣ କମ୍ପା ବିଧି ବିଡ଼ମ୍ବନ,
ମାନୁଷୀ ବିଚାରେ କମ୍ପା ଘଟେ ତା' ମରଣ ?

ମରଣ କାମନା ତା'ର ନଥିଲା ତ ତିଳେ,
ପ୍ରାରମ୍ଭିକ ମୃତ୍ୟୁ-ବିଭୀଷିକା ଏଥି ବଳେ—
କେ କମ୍ପା ରଚେ ତା ବିସ୍ମାରିତ ନେତ୍ର କୋଣେ,
କାହିଁ ହେଲେ ମୃତ୍ୟୁ-ଭୟ ତିଳେ ତ ନ ଆଣେ ?

ଅପେକ୍ଷାରେ ଅଛି କେବେ ଟାଇବ ସେ ଫାଶୀ,
ତା' ପାଇଁ ରଚିତ ଏଣେ କାଳ ଫାଶ ରସି ।
ନିର୍ମମ ଏ ବନ୍ଦୀ ଘରେ ନିର୍ଜ୍ଜନ ଏ ବଳେ,
ଆବଦ୍ଧ ସେ ଦବାରେ ଦୃଷ୍ଟି ଅନ୍ତରାଳେ ।

ରହିଛି ତା' ନାମେ ସେତ୍ତୁ ଅଟେ ନରହନ୍ତା,
ଦଣ୍ଡିଛି ତାହାରେ ଦର୍ପେ ରାଷ୍ଟ୍ର ବଳବନ୍ତା ।

ନିରୀହ ସରଳ ତା'ର ସଦା ଧର୍ମ-ଭୟ,
ବିଷୟୀ କୁଟୁମ୍ବ ଜନ ଦଇବେ ଆଶ୍ରୟ ।

ନୁହେ ସେ ପଣ୍ଡିତ ଅବା ବିଦ୍ୟାବନ୍ତ ଜନ,
ବନସ୍ତ ନିବାସୀ ସାଧୁ ସରଳ ସଜ୍ଜନ ।
ଦୁଃଖୀ ଦୁଃଖ ଦେଖି ତା'ର ତରଳେ ହୃଦୟ,
ଯାଇ ପଡ଼ୋଶାରେ ଦ୍ରୁତି, ଦୁଃଖୀରେ ସଦୟ ।

ଗୀତା-ଭାଗବତ ଦେବୀ-ଜଣାଣ ସେ ଜାଣେ,
ଧରମେ ଧାରଣା, ନାହିଁ ଧନ ଜନ ମାନେ ।
ଶତ୍ରୁ ମିତ୍ର ନ ଜାଣଇ ନାମ ତା ଲକ୍ଷଣ,
ସାଧୁସନ୍ଥ ଜନସେବା ଗୁଣ ବିଲକ୍ଷଣ ।

ନିଘଞ୍ଚ କାନନେ ବାସ ନ ଜାଣେ ସେ ଛନ୍ଦ,
ସହଜ-ବିଶ୍ୱାସୀ କାହୁଁ ବୁଝିବ ସେ ମନ୍ଦ ।
ଗ୍ରାମବାସୀ ଦୁଃଖ ତାକୁ ଏକା ମନ୍ଦ ଦିଶେ,
ସେ ମନ୍ଦ ମୋଚନ କର୍ମେ ତା' ମନ ନିବେଶେ ।

ଧର୍ମ ବୋଲି ଯାହା ଥରେ କରିଛୁ ଧାରଣା
ତାହା ଅନୁସରି ଯାଏ ନ କରି ଛଳନା ।
ଭାଗବତ ପୁରାଣେ ଶୁଣିଛୁ ଧର୍ମ-ଗାଥା,
ଅହିଂସା ପରମ ଧର୍ମ, ଯୁଗ ଯୁଗ ବାର୍ତ୍ତା ।

ଅହିଂସା ନାମେ ଯେ ହେଲୁ ସ୍ୱଦେଶୀ ସମର
ସରଳ ସୈନିକ ରୂପେ ସେ ତହିଁ ବିଭୋର ।
ଦୁଃଖୀ ଦୁଃଖ ବିମୋଚନେ ମଣଇ ସେ ମୁକ୍ତି,
ସମରେ ବିଜୟ ତା'ରେ ଦୁଃଖୀ ହୃଦେ ତୃପ୍ତି ।

'ଅହିଂସା ସମର' ବୋଲି ଦୂରୁ ହେଲ୍ ଡାକ,
କେମନ୍ତେ ବ୍ୟାପିଲ୍ ତାହା ବନଭୂମି ଯାକ ।
କେଜାଣି କି ଭାବେ କିଏ ଦେଲଟି ବୁଝାଇ,
କାହିଁ କେଉଁ ପଥେ କିଏ ଗଲେ ବା ଧସାଇ ।

ବନବାସୀ ଆଦିମନିବାସୀ ହେଲେ ଖର,
କି ଜାଣନ୍ତି ରାଜନୀତି ରାଷ୍ଟ୍ରୀୟ ସମର ?
ତାଙ୍କ ପାଇଁ ରାଷ୍ଟ୍ର କଂଟୁଆଲ ପୁଞ୍ଜି ପତି—
ଶୋଷଣ ଦମନ ସବୁ ଦୁଃଖ ମୂଳ-ଭିତ୍ତି ।

ତାଙ୍କୁ ନ ମାନିବା ହେତୁ ମଣିଲେ ସମର,
ତାଙ୍କ ପାଶେ ନ ନୁଆଁଇ ଦେବେ ନିଜେ ଶିର ।
କାହୁଁ ଦଳେ ଦଳେ ଗଲେ କା ନିଦେଶ ମାନି,
କିଏ ଜାଣିଥିଲା ତହିଁ ଜଳିବ ଦାବାଗ୍ନି !

ଜୟପୁର ବନଗର୍ଭେ ମୈଥିଳ ମଣ୍ଡଳେ,
ଠକି ହେଉ କପଟ ରଚିଲେ କଂଟୁଆଳେ;
ସରଳ ଆଦିମ ଲୋକେ ବୁଝି ନ ପାରିଲେ,
କପଟେ ରଚିତ କୂଟ ଫାଶରେ ପଡ଼ିଲେ ।

କେ ଅବା କପଟେ ମେଳେ ଥିଲା କଳାପର
ଅବାଟେ କଢ଼ାଇ ନେଲା ଇନ୍ଦ୍ରଜାଲ ପରି ।
ସମର ନୁହେ ତା 'ସତ୍ୟାଗ୍ରହ' ବୋଲି ମଣି,
ଯାଇଥିଲା ତହିଁ ହୋଇ ଲକ୍ଷ୍ମଣ ଅଗ୍ରଣୀ ।

କେଜାଣି କେମନ୍ତେ କୂଟ କୌଶଳ ଫଳିଲା,
କଂଟୁଆଳୀ ଅଗ୍ନିବାଣେ ଜନତା ଛେପିଲା ।
କେତେ ଯେ ଲୋଟିଲେ ତଳେ କେ କରେ କଳନା,
ଅଗ୍ନିବାଣେ ହତାହତ ଲୋକଙ୍କ ଯାତନା !

କେତେ ମଲେ କେତେ ଗଲେ କିଏ ବା କହିବ,
ବହୁକାଳ ଅଗୋଚରେ ସେ ଦୁଃଖ ରହିବ ।
ବନ କଂଟୁଆଳ ମେଳୁ ଜଣେ ଗଲା ପଡ଼ି,
କେ ଜାଣି କା ମାଡ଼େ ତା'ର ପ୍ରାଣ ଗଲା ଉଡ଼ି ।

ମାରିବେ ନିର୍ଭୟେ ଉଭା ଲକ୍ଷ୍ମଣ ଅଗ୍ରତେ,
ଅସ୍ତ୍ରାଘାତେ ରଞ୍ଜିତ ତା ବଦନ ରକତେ ।

ନ ମାରିବ କାହାରେ ଯେ କରିଅଛୁ ପଣ,
ଅନ୍ତରେ ରହିଲା ଯାର ଅପେକ୍ଷି ମରଣ ।

ଘନଘନ ଅଗ୍ନିବୃଷ୍ଟି କଲେ କର୍ତ୍ତୃଆଳ,
ନିମିଷେ ନିଶୂନ୍ୟ ହେଲା ଧାମ ବନସ୍ଥଳ ।
ନ ଜାଣେ ଲକ୍ଷ୍ମଣ କି ବା ହେଲା କେ କି କଲା,
ବନ୍ଧଣ୍ଡ ବନ୍ଦନେ ଯାର ଘରେ ବାହୁଡ଼ିଲା ।

ବିତିଗଲା ଯାତନାର ମନେ ଘୋର ଦୁଃଖ,
ଅହିଂସା ସାଧନେ କିଏ ହୋଇଲା ବିମୁଖ ।
ଆସିଗଲେ କର୍ତ୍ତୃଆଳ ବଳ କାହିଁ ଘେରି,
ଧଇଲେ ଲକ୍ଷ୍ମଣେ ହାତେ ଦେଲେ ଦୃଢ଼େ ବେଡ଼ି ।

ତହିଁ ପୌର ଆତ୍ମୀୟ ସ୍ୱଜନ ଗ୍ରାମବାସୀ
ଦେଖି ଦେଖି ବନ୍ଦୀ ରୂପେ ଠୂଳ ହେଲେ ଆସି ।
କାହିଁ କେଉଁ ଦୂରଗ୍ରାମୁଁ କେତେ ହେଲେ ବନ୍ଦୀ,
ଶତାଧିକ ଅଧିକ ଲୋକ ହୋଇଛନ୍ତି ଛନ୍ଦି ।

ଦୂରେ କୋରାପୁଟେ ତାଙ୍କ ହୋଇବ ବିଚାର,
ମେଳି ନରହତ୍ୟା ଅପରାଧ ଦୁର୍ନିବାର,
ଜନମେଳୁ କେତେ ମଲେ କର୍ତ୍ତୃଆଳୀ ଘାତେ,
ଅଥବା ଗୁଳିବୃଷ୍ଟି କନ୍ଧୁକ ସଂଘାତେ ।

କଳବଳେ ମଲେ କେତେ ଛିନ୍ନ ଭିନ୍ନ ହେଲେ,
ଏ ନୁହଇ ହତ୍ୟା ନାହିଁ ଅପରାଧ ଭଲେ ।
ହତ୍ୟା ଦୋଷେ ଅପରାଧୀ ବିଚାରି ଲକ୍ଷ୍ମଣ—
ହିଂସା ଚଳେ ବୁକୁ ଯା'ର ହୁଅଇ ବିଦୀର୍ଣ୍ଣ !

କହଇ ଲକ୍ଷ୍ମଣ ନାହିଁ ଅପରାଧ ଏଥି,
ନିର୍ଦ୍ଦୋଷ ମୁଁ ମୋର ସେହି ଭଗବାନ ସାକ୍ଷୀ ।

ସନ୍ତ୍ରସ୍ତ ସମଗ୍ର ଜନତା ଯେଉଁଠାରେ,
'ବିପ୍ଳବ' ଦମନ ନାହିଁ କପଟ ବେଶରେ ।
ତହିଁ ଅପରାଧୀ ପକ୍ଷେ କେବା ହେବ ସାକ୍ଷୀ,
ଦୃପ୍ତ ଶାସନ ଶକ୍ତିର ଦେଖି ରକ୍ତ ଆଖି,
ମରିବେ ଲକ୍ଷ୍ମଣ ଉଭା କାଠଗଡ଼ ତଳେ,
ସାକ୍ଷୀ ତା'ର ଉର୍ଦ୍ଧ୍ୱେ ଧର୍ମ ପୃଥ୍ୱୀ ପାଦତଳେ ।

'ନିର୍ଦ୍ଦୋଷ' ବୋଲି କହିଲ ଲକ୍ଷ୍ମଣ ଗମ୍ଭୀରେ,
କାହିଁ ଦୟା ଦଣ୍ଡାଧୀଶ ବର୍ଗର ବୁଦ୍ଧିରେ ?
ଶାସ୍ତି ହେଲା ମୃତ୍ୟୁ ଦଣ୍ଡ ଫାଶୀକାଠେ ବଳି—
ହୋଇବ ଲକ୍ଷ୍ମଣ-ହତ୍ୟା ଅପରାଧୀ ବୋଲି ।

ଆଉ କେତେ ଦ୍ୱୀପାନ୍ତର ଦଣ୍ଡ ହେଲେ ଭାଗୀ,
କଠୋର କଏଦ ଦଣ୍ଡ ଅପରଙ୍କ ଲାଗି
ଲକ୍ଷ୍ମଣ ରକତେ ହେବ ହତ୍ୟା-ପ୍ରତିଶୋଧ
ଏ ଫଳ ଫଳିଲା କରି ରାଷ୍ଟ୍ରର ବିରୋଧ-

ବୋଲି ଡରିବା ପାଇଁ ଦେଶବାସୀ ଜନେ,
ନିର୍ମମ ବିଧାନ ଖଞ୍ଜେ ବିଦେଶୀ ଶାସନେ ।
ନ ବୁଝେ ଶାସକ କି ସେ ଶାସ୍ତି ପରିଣତି,
ବିଶ୍ୱରେ ସଭୟେ ଲୋକ ଭକେ ଅନୁରକ୍ତି ।

ଶାସ୍ତି ପରିଣତି ଅବା ବାହାରକୁ ଭୟ,
ଅନ୍ତରେ ତା ପ୍ରତିହିଂସା ପ୍ରତିଶୋଧେ ଲୟ ।
କ୍ରୋଧ ହିଂସା ଅସନ୍ତୋଷ ଅନ୍ତରେ ଜଳଇ,
ଓଲଟେ ବିପ୍ଳବୀ ଭୁଲେ କରୁଣା ଜନ୍ମଇ ।

ଅଜ୍ଞାତ ନ୍ୟାୟ ଅନ୍ୟାୟେ ନ ରହେ ଚେତନା,
ସମ୍ମୁଖେ କଷଣ ଭୋଗେ କୃପା ଉର୍ଦ୍ଧାପନା;
ତହିଁ ପୁଣି ଦେଶ ହିତ ଭୋଗିଲେ କଷଣ,
ନିର୍ଦ୍ଦୋଷରେ କୂଟତନ୍ତ୍ରେ କରିଲେ ଦୋଷଣ ।

ଶାସନର ନ୍ୟାୟଭିତ୍ତି ଅଲକ୍ଷେ ତୁଟଇ,
ଶାସିତ ଅନ୍ତରୁ ଅନୁରକ୍ତି ତା ଲୁଟଇ ।
ଏ ଘୋର ବିପତ୍ତି ରାଷ୍ଟ୍ର ଭୁଲେ ସୃଷ୍ଟି କରେ,
ଜନମତ ସମାଜ-ବିଶ୍ୱାସେ ଯାହା ଚଳେ ।

ଅଲକ୍ଷିତ ଆଲୋଡ଼ନେ ଚହଲେ ହୃଦୟ,
ଆଘାତ ଶୃଙ୍ଖଳା ତଳେ ଶାନ୍ତିର ବିଲୟ ।
'ଶାମ ଦାନ ଦଣ୍ଡ ଭେଦ' ଶାସନ ଶୈଳୀ,
ଶାମ ଦାନ ସ୍ଥାନ ନେଷ୍ଟ୍ର ଦଣ୍ଡଭେଦ କଳି—

ରକ୍ଷି ନ ପାରଇ କ୍ରମେ ତୁଟେ ରାଷ୍ଟ୍ର ଭିତ୍ତି,
ପଶୁ ବଳେ ବାନ୍ଧିଲେ ବା ଶାସନ ସୁସ୍ଥିତି ।
ଏ ନୁହେ କଳ୍ପନା ଅବା ଦୁର୍ବଳ କାମନା,
ଇତିହାସ ନିଜ ମତ ରାଷ୍ଟ୍ରୀୟ ତୁଳନା ।

କି ହେବ ବିଚାର ବୃଥା ମାନସ-ରାଇଜେ
ଅବଶ୍ୟ ଘଟିବା ପଥେ ଚଳାଏ ଦଇବେ ।
ଯନ୍ତ୍ରରୂପୀ ଶାସନର ବିଚାର ବିଧାନେ,
ଦୟା କ୍ଷମା ଧର୍ମ-ଭୟ ପାଇବ କି ସ୍ଥାନେ ?

ତେବେ କିମ୍ପା ଲକ୍ଷ୍ମଣରେ ଶାସ୍ତି ବିଡ଼ମ୍ବନ
ଯାନ୍ତ୍ରିକ ବିଚାରେ କାହିଁ ହୃଦୟ କମ୍ପନ ?
ନ ଥିଲା ହୃଦତନ୍ତ୍ରୀ ନ କମ୍ପିଲା କର
ନ ଛିଡ଼ିଲା ଜିହ୍ୱା ସେବା ସାକ୍ଷ୍ୟ ହେଲେ ସଳ ।

ମଣିପାରେ ହେଲା ଶାସ୍ତି ସଦ୍ୟ ପ୍ରାଣଦଣ୍ଡ—
ମଣୁ ତା ଜଗତ ପଛେ ଦାରୁଣ ପ୍ରଚଣ୍ଡ
ମାରବେ ନିସ୍ତବ୍ଧେ ଶାସ୍ତି ଶୁଣିଲା ଲକ୍ଷ୍ମଣ—
ପଲକେ ଚିହ୍ନିଲା ନେନସେ ଦୁରନ୍ତ ମରଣ ।

ନ ହଲିଲା ଭ୍ରୂଲତା ନ ଥରିଲା ହୃଦ,
ନ ସ୍ଖଳିଲା ହୃଦ ହେଲେ ହେଁ ଆସନ୍ନ-ବୃଦ୍ଧ,

ନିର୍ନିମେଷ ନୟନେ ଅନାଇ ମହାଭାଗେ,
ମୃତ୍ୟୁର ପବିତ୍ର ଜ୍ୟୋତି ଦେଖଇ ସେ ଆଗେ ।

ଆସକ୍ତି ଆସିଲ ତା'ର ମରଣ-ସନ୍ଧ୍ୟାରେ,
ଆସକ୍ତି-ଆଧାର ପ୍ରିୟ ମାନବ ସଂସୃତରେ ।
ଅଶେଷ ଦୋଷରେ ଦୁଷ୍ଟ ଦେହୀର ଶରୀର,
ତଥାପି ମମତା ତାରେ, ବିୟୋଗେ ଅଧୀର ।

ଅଧୀରତା ହେତୁ ଏକା ମାନସେ ଆସକ୍ତି,
ପ୍ରିୟ ଯାହା ଆସକ୍ତି ତା କରେ ଅନୁଗତି ।
ସଂପଦେ ସୁଖ ସମ୍ମାନ ତହିଁରେ ଆସକ୍ତି,
ପ୍ରଣୟେ ମାନସ ସୁଖ ତହୁଁ ଅନୁରକ୍ତି ।

ଆତ୍ମୀୟ ସ୍ୱଜନ ସୁତ ସୁତା ଜାୟା ଧବ,
ଧନମାନ ପ୍ରଭୃତିର କରମ ଫଳ ଲାଭ,
ସବୁରେ ଆସକ୍ତି ତେଣୁ ପ୍ରିୟ ହୁଏ ସେହୁ,
ଆସକ୍ତି-ଶୂନ୍ୟ ବିଷୟେ ଲିପ୍ତ ନୁହେ କେହୁ ।

ବାସନା ଆସକ୍ତି ରିପୁ ଯେହେତୁ ମରଣ,
ସେ ମୃତ୍ୟୁ କଳ୍ପନା ଦିଏ ଦାରୁଣ କଷଣ ।
ମରଣ ଇଚ୍ଛିବା ନୁହେ ଦେହୀର ଧରମ;
ଯୋଗୀ ହେଲେ ଇଚ୍ଛେ ମୁକ୍ତି ନ ଇଚ୍ଛେ ମରଣ ।

ଆସକ୍ତି-ଜଡ଼ିତ ନୋହି ତା ବିଚ୍ଛେଦେ ଦୁଃଖ,
ମରଣେ ବିଚ୍ଛେଦ ଯେଣୁ, ମରଣ ବିମୁଖ ।
ମାତ୍ର ଯଦି ମରଣରେ ଆସନ୍ତା ଆସକ୍ତି,
ମୃତ୍ୟୁରେ ଆନନ୍ଦ ମୃତ୍ୟୁ ଦିଅନ୍ତା ଶକତି ।

ପ୍ରିୟ ହେବା ଭଳି କାହିଁ ଅଛି କି ମରଣ ?
ମୃତ୍ୟୁର ଯେ ରୂପ ଦେଖେ ମାନସେ ଲକ୍ଷଣ ।

× × ×

ମୃତ୍ୟୁପଥ ଯାତ୍ରୀ ଏବେ ଆର୍ମୀଯୁଥ ଭଗ୍ନ,
କାହିଁ ଦୂରେ ପୁତ୍ର ଦାର ସଭିହିଁ ବଞ୍ଚିତ୍ର ।

ଶେଷ ଦେଖା ଦେଖିବାର ଆଶା ଅବା ପ୍ରାଣେ,
ଶେଷ କଥା କହିବାକୁ ଜାୟା ବା ସନ୍ତାନେ,
ବଳଥିବ ଅବା ଇଚ୍ଛା ନ ହେଲା ସମ୍ଭବ,
କ୍ରୂର ଯନ୍ତ୍ର ରଚେ ଯହିଁ ମୃତ୍ୟୁର ତାଣ୍ଡବ—

ନାହିଁ ଅବକାଶ ପ୍ରିୟ ପ୍ରିୟାରେ ଦେଖିବା,
ଦୃଢ଼ହିଂସା ନାମେ ଯହିଁ ପରାଣେ ମାରିବା,
ହୁଏ ରାଷ୍ଟ୍ର ଧର୍ମ ତହିଁ କାହିଁ ବା କରୁଣା ?
କରୁଣାରେ ରାଷ୍ଟ୍ର-ଦର୍ପ ହୋଇଯିବ ଊଣା !

କଡ଼ ବେଡ଼ ଡୋର ବନ୍ଧା ଆସାମୀ ଲକ୍ଷଣ,
ଆର୍ମୀଯ୍ୟ ଏବେ ତା ଏକା ଦୁରନ୍ତ ମରଣ ।
କଣ୍ଟାଆଳ ବଳ ତା'ରେ ରହିଛନ୍ତି ଘେରି,
ନିବାସ ନିର୍ଜ୍ଜନ ବଳ ପଥର ପାଚେରି ।

ଯୂପ କାଠେ ବଳ ହେବ ଶୀର କାହିଁ ଦୂରେ,
ନଗାଢେ଼ ଆଣିଲେ ତା'ରେ ଧରି ବ୍ରହ୍ମପୁରେ,
ରହିଛି ତା ପାଇଁ ତହିଁ ଘୋର ଅନ୍ଧକୂପ,
ବଳହେବ ଅଛି ତହିଁ ଯମପୁର ଯୂପ ।

ଛାଡ଼ିଲି ଜନମ ଭୂମି ଦେଖେ ଶେଷ ଦେଖା—
ଥାଅ ବନଦେବୀ ! ଆଉ ନ କରିବ ଲେଖା;
ସାଙ୍ଗସାଥୀ ମୋର ଯହିଁ ରଚିଲେ ଶ୍ମଶାନ,
ତହିଁ ତୋ ବୁକୁରେ ମୋତେ ନ ଦେଲୁ ତୁ ସ୍ଥାନ ।

ଯହିଁ ଗଲେ ତହିଁ ଥିବ ତୋ ସ୍ମୃତିର ଗୃହି,
ମରଣେ ତୋ ଛବି ଦେଖେ ଆଗୋ ଜନ୍ମଭୂଇଁ !
କେତେ ମୁଁ ପିଇଛି ତୋ ଏ ଝରଣାର ବାରି,
କେତେ ମୁଁ ଦେଖିଛି ତୋ ଏ ବନଗିରି ଶିରୀ ।

କେତେ ମୁଁ ବଡ଼ର କେତେ ଶୋଇଛି ତୋ କୋଳେ,
କେତେ ମୁଁ ଖେଳିଛି ତୋରେ ବୟୋର ବନ୍ଧୁରେ ।
କେତେ ବନଦେବ ! ତୋତେ ଯାଇଛି ମୁଁ ପୂଜ,
କେତେ ଗୋ ଦେଇଛୁ ମିଳ ତୋରେ ବନଭୋଜ ।

ସେ ଦେହ ଏ ତନୁ ତୋରେ ଆଜନ୍ମ ଜନମୀ !
ଆଣ୍ଡି, ଇଚ୍ଛି ଥିଲି ଶେଷେ ଜୀବନ-ଯାମିନୀ
ପୁହାଇବ ଶେଷ ଶଯ୍ୟା ରଚିବ ତୋ କୋଳେ,
ମିଶାଇବ ମରଦେହ ତୋହର ମାଟିରେ ।

ନ ହେଲା ନ ହେଲା ମାଗୋ କପାଳେ ସେ ସୁଖ,
ଯାଇଛି ଜନନୀ : ମୋରେ ନୋହିବୁ ବିମୁଖ ।
ମରଣ ବରଣେ ଦୁଃଖ ନାହିଁ ଲୋ ଜନନୀ !
ମରଣ ମୋ ପାଇଁ ମଣେ ଆନନ୍ଦ ସରଣୀ ।

ଗ୍ରାମବାସୀ ଦେଶବାସୀ ମୋ ପ୍ରିୟ ସୋଦରେ !
ନେଉଛି ବିଦାୟ ଚିର ତୁମ ଅଗୋଚରେ,
ନ ମଣିବ ଦୁଃଖ ଅବା ନ କରିବ ଶୋକ,
ଅଧମ ଲକ୍ଷ୍ମଣ ସିନା ତୁମର ସେବକ ।

ମୃତ୍ୟୁ ଭୟ ଉପୁଜାଏ ଜାଣେ ମୁଁ ମୁକର,
ମାତ୍ର ଯହିଁ ମୃତ୍ୟୁ ଜାଳେ ବିପ୍ଳବ ଅନଳ,
ଅନ୍ୟାୟ ନାଶିବା ପାଇଁ ଦିଏ ହୃଦେ ତେଜ,
ଶାସକ ଶୋଷଣ ତୁଳେ ଆଣିଦିଏ ହେଜ ।

ସତ୍ୟ ଧର୍ମ ପଥେ ଜନେ ଦିଏ ଉଦ୍ଦୀପନା,
ମୁକ୍ତି ସଂଗ୍ରାମେ ଦିଏ ତ୍ୟାଗର ପ୍ରେରଣା,
କର୍ମର ସମଷ୍ଟି ଯହିଁ ମରଣେ ପ୍ରକାଶ,
ସେ ମରଣେ ଖେଦ ନାହିଁ ସେ ଆତ୍ମ-ବିକାଶ,

କେଜାଣି କାହିଁକି ମୋର ମରଣେ ଆନନ୍ଦ
ହେଉଁ ଥିଲେ ମରଣ ଦଣ୍ଡ ଶାସକର ଛନ୍ଦ—

ଦେଶଲୋକେ ଦେଖାଇବ ଦରପଣ ସର,
ଶାସନ ଅଧର୍ମ ଆବରଣ ଅପସର ।

'ମହାତ୍ମା' କଳ୍ପିତ ଏହି ଅହିଂସା ସମର,
ଅଧର୍ମେ ଶହ୍ଲାଇ ଧର୍ମେ ଆଣିବ ପାମର,
ଏହି ବିଶ୍ୱାସରେ ମୁହିଁ ପଶିଥିଲି ରଣେ,
ସେ ଫଳ ଫଳିବ ଆଶା ମୋହର ମରଣେ ।

ତେଣୁ ନିର୍ଦ୍ଦୋଷେ ମରଣ ମୋରେ ବଡ଼ ପ୍ରିୟ,
ଗତଜନ୍ମ କର୍ମଫଳ୍ତୁ ଏ ମରଣେ ଶ୍ରେୟ ।

× × ×

ଫିଟାଅ ଫାଟକ ବନ୍ଦୀ-ରକ୍ଷକ କେ ଅଛ,
ସମସ୍ତ ଫଉଜ ଉଭା ଲୁହା ବାଡ଼ ପଛ;
ଆଣିଛୁ ଫାଶୀ ଆସାମୀ ନିଅ ବେଗ କରି,
ବୋଲନ୍ତେ ଫିଟିଲା ଦ୍ୱାର, ଡାହୁଛୁ ଶବଦ ।

କଡ଼ ବେଡ଼ ଡୋରି ବନ୍ଧା ଆସାମୀ ଲକ୍ଷ୍ମଣ,
ଆଣିଲେ ଭିତରେ ବନ୍ଦୀ କଟୁଆଳଗଣ ।
ନିର୍ଜ୍ଜନ ବଳରେ ବନ୍ଦୀ କଲେ ଦେଲେ କୁଞ୍ଚି,
ତଲସି ଦେଖିଲେ ବଳ ଗୃହଆଡ଼ ମୁଛି ।

ଅହରହ ଅସ୍ତ୍ରଧାରୀ ଜଗୁଆଳ ଠିଆ,
ବଳେ ବସାଣୁଆ ତା'ର ବଳେ ଖିଆପିଆ ।
ଅବିରତ କୁଞ୍ଚିକାଠି ଚଢ଼ିଛି ତା ଦ୍ୱାରେ,
ନମରୁ ମରିବା ସର ବେଭର ତାହାରେ ।

ମନୁଷ୍ୟ ସେ ମନୁଷ୍ୟରେ ନ କହିବ କଥା,
ସଶସ୍ତ୍ର ପ୍ରହରୀ ବିନୁ ଆନେ ନାହିଁ ଦେଖା,
ରୁଦ୍ଧ ସେ ନିର୍ଜ୍ଜନ ଗୁମ୍ଫା ତା'ର ବାସସ୍ଥଳୀ,
ସୁରକ୍ଷିତ, ହେବ ଦରି ବସ୍ତୁ-ନର-ବଳି !

ବିପ୍ଳବୀ ସେ ବିପ୍ଳବରେ ବରୁଛି ମରଣ,
କେତେ ତ 'ବିପ୍ଳବୀ' ଏଥି ଦେଖଇ ଲକ୍ଷଣ,
କେ କଏଦୀ କେ ଅଟକ ବନ୍ଦୀ ରୂପେ ଏଥି,
ବୁଲୁଛନ୍ତି ମେଳେ ତାରେ କୁତୂହଳେ ଦେଖି !

କେ ଗୁହିଁ କହଇ ଦୁଃଖେ ମନେ ଆହା ଆହା,
କେ ବୋଲେ ବିପ୍ଳବେ ଏକା ପରିଣାମ ତାହା ।
କେ ବୋଲେ ଲକ୍ଷ୍ମଣ ଏକା ବିପ୍ଳବ ନିଶାଣ,
କେ ବୋଲେ ଏ 'ଇନ୍‌କ୍ଲାବ୍‌-ଜିନ୍ଦାବାଦ୍‌' ଜାଣ ।

କେ ବୋଲେ ଏ ତ୍ୟାଗ ଏକା ଅଟେ ଅନୁପମ,
କେ ବୋଲେ ଗୁଳିରେ କେତେ ମଲେ ତା କି ଜାଣ ?
କେ ବୋଲେ ଏ କାର୍ଯ୍ୟକ୍ରମେ କେବଣ ରହସ୍ୟ,
ଦାୟିତ୍ୱ କାହାର କେତେ ଫେଇବ ଭବିଷ୍ୟ ।

କେ କରି କହଇ ଏଡ଼େ କୂଟେ ନିଜ ଛତି,
ଅଟର ମରଣପୀଠେ ସାଜେ କୁଳପତି ।
କେ ବୋଲେ ନିର୍ମମ କେଡ଼େ ଶାସନ ବର୍ବର,
ପ୍ରତିଶୋଧ ନେବା ଏବେ ଉଚିତ ପ୍ରକାର ।

କେ ବୋଲେ ଲକ୍ଷ୍ମଣ ଆଉ ନଥିବରେ ଭାଇ,
ସୁଫଳ ଫଳିଲେ ତାହା ତୋ ପାଇଁ ମୋ ପାଇଁ ।
କେ ବୋଲେ ବିପ୍ଳବେ ଏହା ଅଟେରେ ଭିଆଣ,
ସୈନ୍ୟ ମରେ ରହେ ସିନା ସେନାପତି ଠାଣ ।

ମୃତ୍ୟୁ-ପଥ-ଯାତ୍ରୀ ବୀର ଲକ୍ଷ୍ମଣ ସଙ୍କେତେ,
ଅନାଇ କହନ୍ତି କେଉଁ ମତେ କଏ କେତେ ।
ଦୁଃଖେ କ୍ରୋଧେ ଜଳେ କିନ୍ତୁ ସକଳ ଅନ୍ତର,
ଅନ୍ତର୍ମୁଖୀ ଅନୁଧ୍ୟାନେ କେ ଅବା କାତର—

ବର୍ତ୍ତରେ ଖଟରେ ଶେଯେ କରୁଛି ଶୟନ,
କମ୍ବଳ ସମ୍ବଳେ ଆହା ଯାପେ ସେ ଜୀବନ,

ଆହାର ବହାର ମୋର ସାଙ୍ଗ ସୁଖ ମେଳେ,
ଅର୍ଦ୍ଧ-ଅନଶନେ ରୁଦ୍ଧ ନିର୍ଜ୍ଜନ ସେ ବଳେ ।

ମୁଁ ନେବେ ଚଳଇ ସୁଖ ସଂସାର ଭବିଷ୍ୟ,
ତା' ପାଇଁ ମରଣ, ତା'ରେ ଏ ସଂସାର ବିଷ !
ମାରିବେ, ମାରିବା ପୂର୍ବ ଜୀବନ୍ତ-ବଧାଇ
କଳିବଳେ କରନ୍ତି ଯା, ଲବେ ଦସ୍ୟୁ ନାହିଁ ?

ବୈଷମ୍ୟ-ପୂରିତ-ବନ୍ଦୀ-ବନ୍ଧନ ବଧାନ,
'ଦୋଷ' ଅନୁରୂପେ ପବି ଶାସ୍ତିର ସଂଧାନ !
ଦୋଷୀ ନିର୍ଦ୍ଦୋଷ ବାରିବା ଶକ୍ତି ଶାସନର,
ଥାଆନ୍ତା ଯେବେଟି ବଧି ହୁଅନ୍ତା ଅନ୍ତର ।

ଆଜ ଯେ ଶାସକ ସଭ୍ୟ ବୋଲନ୍ତି ଅଗ୍ରଣୀ,
ଅପରାଧ, ପ୍ରତି-ଅପରାଧର କରଣୀ,
ତାଙ୍କ କୃତ୍ୟ, ସେହୁ ଏକା ହୋନ୍ତେ ପାପେ ଭାଗୀ,
ବିପ୍ଳବ ବିଭ୍ରାଟ ସିନା ସବୁ ତାଙ୍କ ଲାଗି ।

ହାଣ୍ଡି ଖାଏ କଉଡ଼ିଟି ଢୋଲ ଖାଏ ମାଡ଼,—
ଏ ସଂସାର ନୀତି, ଏଥି ବଡ଼ଲୋକେ ବାଡ଼,
ସରଳ ନିରୀହ ଲୋକେ ଭୋଗନ୍ତି ଗଞ୍ଜଣା,
ତାଙ୍କର କପାଳେ ଦୁଃଖ ନିର୍ଯ୍ୟାତ ତାଡ଼ନା ।

ତାଙ୍କର ରକତେ ପୁଷ୍ଟ ଶାସକ ଅଗ୍ରଣୀ,
ତାଙ୍କୁ ବଳଦେବା ଖଳ ପ୍ରଭୁପଣ ମଣି ।
ଅଛି କି ସଂସାରେ ଧର୍ମ ଅଛନ୍ତି କି ବଧି,
କେମନ୍ତେ ସହନ୍ତି ଏହି ବୀଭତ୍ସ ଅବଧି ।

ଶୋଷଣ ଦମନ ଯହିଁ ଶକ୍ତିରୁ ସଂଜାତ,
ଶାସନ ସିଦ୍ଧାନ୍ତ ଯହିଁ ନିର୍ଦ୍ଦୋଷରେ ଘାତ ।
ସତ୍ୟନାମେ ଅସତ୍ୟର ଯହିଁ ବିନିଯୋଗ,
ଅହିଂସା ନିଧନ, ଯହିଁ ହିଂସାରେ ସମ୍ଭୋଗ ।

ଦାସତ୍ୱ ବିଧାନେ ଯହିଁ ଶକ୍ତିର ପ୍ରକାଶ,
କୂଟନୀତି ଯହିଁ କରେ ସାଧୁରେ ବିନାଶ,
ଶିକ୍ଷା ପରିଣତି ଯହିଁ ସ୍ୱଧର୍ମ ସଂହାର,
ରାଷ୍ଟ୍ରନାମେ ଯହିଁ ଚଳେ ନ୍ୟାୟ-ବ୍ୟଭିଚାର ।

ସେଠାରେ ମରଣ ଶ୍ରେୟ ସଂହାର ଆହବେ,
ଧିକ ସେ ସଂସାରେ ଧିକ ଧିକ ସେ ମାନବେ ।
ମରଣ-ବରଣ ତହିଁ ଆନନ୍ଦ-ସରଣୀ,
ମରଣ-ଧରମ ତହିଁ ସ୍ୱରଗେ ତରଣୀ;

ଏ ମରଣ ପ୍ରତିଘାତେ କମ୍ପିବ ଧରଣୀ,
ଏ ପୁଣ୍ୟ ଆହୁତି ଯୋଗେ ତେଜିବ ଅଶନି,
ନାଶଯିବ ଅସତ୍ୟ ଅଧର୍ମ କପଟତା,
ସ୍ୱାର୍ଥାର୍ଥୀ ପ୍ରଭୁତ୍ୱ ବାଞ୍ଛା ଶୋଷଣେ ସଂସ୍ଥା;

ସାମ୍ୟ ମୈତ୍ରୀ ଭାବେ ହେବ ମହୀ ମହୀୟାନ,
ପବିତ୍ର ମାର୍ଜିତ ହେବ ଶାସନ-ବିଧାନ ।
ସାମାଜିକ ସ୍ଥିତି ହେବ ଧର୍ମେ ନିୟନ୍ତ୍ରିତ,
ନ ହେଲେ ସଂସାରେ ସୃଷ୍ଟି ହୋଇବ ବିଲୁପ୍ତ ।

× × ×

ସେଥିପାଇଁ ଲକ୍ଷ୍ମଣର ନ ହେଲା ମରଣ-
ଦୃଷ୍ଟି ଅନ୍ତରାଳେ ତହିଁ ମଇଥିଳୀ ବନ-
ଲକ୍ଷ୍ମଣ ଆସିଛି ଏଥି ଯୂପକାଠେ ବଳି
ହୋଇ ଚିହ୍ନାଇବ କ୍ରୂର ଶାସନ-ଶୃଙ୍ଖଳ ।

ଚେତାଇବ ସଙ୍ଗୀଜନେ ସେବକେ ନାୟକେ,
କାମନା-ବିହୀନ-ମୁକ୍ତି-ସାଧନ ସାୟକେ,
ଦେଖିବେ ସକଳେ ବୀର ବରିବ ମରଣ,
ମୃତ୍ୟୁର ପୂର୍ବରୁ ସହେ ଦୁରନ୍ତ କଷଣ,

ଦେଖଇ ଜୀବନ ଲୀଳା ଏଥି ବନ୍ଦୀଙ୍କର,
ଖାଇ ପିଇ ବନ୍ଦୀ ବଞ୍ଚେ ଭୋଗେ ତା ସଂସାର ।
ତା ନେତ୍ରେ ନାଚଇ ମୃତ୍ୟୁ କରାଳ ବଦନେ,
ତା ଦେହେ ଦହଇ କ୍ଷୁଧା ଅର୍ଦ୍ଧ-ଅନଶନେ ।

ତା ଅଙ୍ଗ ଲୌହସ୍ତୁ ତଳେ ନ ଦେଖେ ଆଲୋକ,
ତା ନେତ୍ରେ ନ ଆସେ ନିଦ୍ରା ନ ପଡ଼େ ପଲକ ।
ଶରୀରରୁ ମାୟା ତାର ଲଟବ ଯାଏ ତୁଟି
ମରଣେ ଆଦର ଦେଖୁ ମରଣେ ଭ୍ରୂକୁଟି ।

ମୃତ୍ୟୁରେ ଗୌରବ ମଣେ ମୃତ୍ୟୁରେ ଜୀବନ,
ମୃତ୍ୟୁରେ ବିଜୟ ଶାନ୍ତି, ମୃତ୍ୟୁରେ ସାଧନ,
ମୃତ୍ୟୁରେ ବିଶ୍ୱନିଦେଶ, ମୃତ୍ୟୁରେ ବିକାଶ,
ମୃତ୍ୟୁରେ ସଚ୍ଚିଦାନନ୍ଦ, ନୀଳାଭ ଆକାଶ ।

ମୃତ୍ୟୁରେ ଅନଳ ଜଳ ମୃତ୍ୟୁରେ ପବନ ।
ମୃତ୍ୟୁରେ ସ୍ୱଜନ ସ୍ନେହ ଆନନ୍ଦ ବର୍ଦ୍ଧନ,
ମୃତ୍ୟୁରେ ବିଶ୍ୱ-ସଙ୍ଗୀତ, ମୃତ୍ୟୁରେ ବାଦନ,
ମୃତ୍ୟୁରେ ମୁକତି, ମୃତ୍ୟୁ ଜୀବନ ପାବନ ।

ମୃତ୍ୟୁ ଜ୍ୟୋତିର୍ମୟ ମୃତ୍ୟୁ ଜ୍ୟୋତିଷ୍କ ମଣ୍ଡଳ,
ମୃତ୍ୟୁ ମୂର୍ତ୍ତିମନ୍ତ ଶୋହେ ହୃଦୟ କନ୍ଦର ।
ହୃଦ କନ୍ଦରୁ ତା ଉଠେ ସଙ୍ଗୀତ ଲହରୀ,
ସଙ୍ଗୀତେ ପୂଜଇ ବିଭୁ ବିବଶ ଶର୍ବରୀ ।

ନିଶି ଯାଏ ନିଶି ଆସେ ଆସେ ଦିବାଲୋକ,
ନ ଦେଖେ ତା ମନ-ପକ୍ଷୀ ଦେଖେ ପରଲୋକ ।
ତା କଣ୍ଠୁ ଉଚ୍ଛୁଳେ ଦେବୀ ଜଣାଣ ସଙ୍ଗୀତ,
ସଙ୍ଗୀତ ଲହରେ ଲିଭେ ସକଳ ଦୁରିତ ।

ମରଣେ ପୂଜଇ ସେହୁ ମରଣେ ହେଜଇ,
ମରଣ ବିନା ତା ନେନେ ଆନ ନ ଦିଶଇ ।

× × ×

ଉଦ୍ୟମିଥିଲେ ଯେ ସଖା ଉଦ୍ଧରିବା ପାଇଁ,
ଉପର ବିଚାର ପୀଠେ ଅନ୍ୟାୟ ଦର୍ଶାଇ,
ପ୍ରତିନିଧି-ରାଷ୍ଟ୍ର-ସାଇଁ ଭୁଲେ ସୁବିଚାର,
ସର୍ବସ୍ୱ ବିଫଳ ଚେଷ୍ଟା ନିଶ୍ଚିତ ସଂହାର ।

× × ×

ଆସିଗଲା ଦିନ ସାଜ ସାଜିଲେ ଘାତକେ,
ଚିନ୍ତିଲେ ସେ ଧର୍ମ ଚିତ୍ତ ଲାଗିବ ପାତକ,
ନିଶାନ୍ତେ ହୋଇବ ଫାଶୀ ହୋଇଛି ଆଦେଶ,
ବାରତା ବ୍ୟାପିଲା କାଲି ହୋଇଯିବ ଶେଷ ।

ନିଶାନ୍ତେ ଚଢ଼ିବ ଫାଶୀ ବୀର ଲଇକ୍ଷଣ,
ଉଡ଼ନ୍ତି ଆକାଶେ ଦେଖି ଗୃଧ୍ର କାକଗଣ,
ବୋଲନ୍ତି ନିଶାନ୍ତେ କାଲି ହେବ ଅଭିନୟ,
ଦାରୁଣ ମରଣ ଲୀଳା ବିଧି ବିପର୍ଯ୍ୟୟ ।

ଲୁଚିଯାଅ ରବି ଶଶୀ ଘୋଟ ଅନ୍ଧକାର,
ନ ଦେଖ ସେ କ୍ରୂର ଚିତ୍ତ ଜୀବନ୍ତେ ସଂହାର ।
ଲୁଚିଗଲେ ରବି କାହିଁ ନ ଦିଶିଲେ ଶଶୀ,
ପଳାଇଲେ ଗୃଧ୍ରକାକ, ଆସେ ଅମାନିଶୀ ।

ତରୁଣ ପ୍ରଭାତୁ ବନ୍ଦୀ-ରକ୍ଷକ-ପ୍ରବର
ବୋଇଲେ ଲକ୍ଷ୍ମଣେ ଦିନ ହୋଇଲା ଆଖର,
ଧାର୍ଯ୍ୟ କଲେ ଫାଶୀଦଣ୍ଡ ଏବେ ରାଷ୍ଟ୍ର ସାଇଁ,
ନିଶାନ୍ତେ ହୋଇବ ଫାଶୀ, ମୋର୍ ଦୋଷ ନାହିଁ ।

ସଙ୍ଗୀତ ବିଭୋରେ ମତ୍ତ ବୀର ସେ ଲକ୍ଷ୍ମଣ,
ଶୁଣି ନ ଶୁଣିଲା ପରି ଫେରାଇ ଈକ୍ଷଣ,
ଚାହିଁଲା ଆକାଶ ପଥେ କି ଅବା ଦେଖିଲା,
ସର୍ବାଙ୍ଗେ ରୋମାଞ୍ଚ ତା'ର ନିମିଷେ ସ୍ଫୁରିଲା ।

ନ କହିଲା କଥା ଓଠେ ସ୍ମିତହାସ୍ୟ ଫୁଟି
ସକଳ ବିଭୂତି ଅବା ବିଶ୍ୱୁ ନେଲା ଲୁଟି,
ଜ୍ୟୋତିର୍ମୟ ହେଲା ତା'ର ବଦନ ମଣ୍ଡଳ,
ଅପୂର୍ବ ଶକ୍ତି ସଞ୍ଚରେ ଦିଶିଲା ଉଜ୍ଜ୍ୱଳ ।

ନିବିଷ୍ଟ ହେଲା ସେ ପୁଣି ବିଭୁ ସ୍ତୁତିଗାନେ,
କାରୁଣ୍ୟ ପୂରିଲା ମନ୍ତ୍ରୀ ତା ସଙ୍ଗୀତ ତାନେ ।
ସର୍ବସ୍ୱ ବ୍ୟାପିଲା ଘୋର ବିଷାଦର ଛାୟା,
ତା ପ୍ରତି ଉପୁଜେ ପ୍ରୀତି ବନ୍ଦୀ ହୃଦେ ମାୟା—

ସର୍ବେ ବଞ୍ଚି ଥାଇଁ ଆହା ହେବ ସେହୁ ବଳି,
ନିଶାନ୍ତେ ଲଭିବ ତା'ର ସଙ୍ଗୀତ ଲହରୀ ।
ସନ୍ଧ୍ୟାର ପ୍ରାକ୍‌କାଳେ ବୀର କ୍ଷଣକେ ନୀରବ
ଡାକିଲା ପ୍ରହରୀ, ବୋଲେ ସଧୀରେ ବିରାଗି—

ମୋ ଭଲା ବାବୁଙ୍କୁ ଥରେ ଦେଖାଇବ ନାହିଁ ?
ବିଦାୟ ନିଅନ୍ତି ଦେଖି ଶେଷଥର ପାଇଁ ।
ଲକ୍ଷ୍ମଣ ସମୀପେ ଉଭା ଦେଖୁ ଭିନପ୍ରାଣୀ,
କହିଲା ଲକ୍ଷ୍ମଣ—ବାବୁ, ନେଉଛୁ ମେଲାଣି ।

ନାହିଁ ମୋ ଭାବନା ଘର ଦାରାସୁତ ପାଇଁ,
ଆସିଥିଲି ଯିବାପାଇଁ ଯିବ ଦୁଃଖ ନାହିଁ ।
ମୁଁ ଜାଣେ ନିର୍ଦ୍ଦୋଷ ମୁହିଁ ନାହିଁ ପାପ ଲେଶ,
ଫାଶୀକାଠେ ଝୁଲିବାରେ ନାହିଁ ମୋର କ୍ଳେଶ ।

ଦେଖନ୍ତୁ ଜଗତ ଲୋକେ ଅଧର୍ମେ ଶାସନ
କେମନ୍ତେ ଦଣ୍ଡଇ ଲୋକେ ଦିଅଇ କଷଣ,

ମୋ ମରଣ ତଳେ ଯେବେ ଦୂଃଖୀ ଦୁଃଖ ହରି,
ଦେଶବାସୀ ହୃଦେ ଦେବ ଆନନ୍ଦ ସଂଚରି ।

ମୋ ମରଣ ତଳେ ଯେବେ ଦେଶର ମୁକତି,
ଦେଶବାସୀ ହୃଦେ ଦେବ ଅଭୟ ଶକତି,
ମଣିବି ମୁଁ ମୋ ଜୀବନ ହେଲା ବୋଲି ଧନ୍ୟ,
ଦୁଃଖୀ ଲୋକେ ନ କରିବ ବାବୁ ଆଶ୍ରାଶୂନ୍ୟ ।

କରିନାହିଁ ନର-ବଧ ନାହିଁ ମୋର ଦୋଷ,
ନିର୍ଦ୍ଦୋଷେ ମରଣ ମୋର, କିଂପା ମୋରେ ରୋଷ ?
ରୋଷେ ତୋଷେ ଦୁଃଖ ନାହିଁ ସବୁ ତ ସମାନ—
ମୋରେ, ସତ୍ୟ ଆହେ ପ୍ରଭୁ ଥାଉ ମୋର ଧ୍ୟାନ ।

ଯେ କରୁଛି ହିଂସା ପ୍ରଭୁ କ୍ଷମା କର ତାରେ,
ଧର୍ମ ବିନା କଏ ଆଉ ଶୁଣିବ ସଂସାରେ !
ନେଉଛି ମେଲାଣି ବାବୁ ଏତିକ ସାକ୍ଷାତ,
ବନ୍ଦି ଶେଷେ ହୋଇଯିବ ତୁମକୁ ଅଜ୍ଞାତ ।

ନାହିଁ ଦୁଃଖ ନଥିଲା ମୋ କିଛି ତ କାମନା,
ଶ୍ରୀହରି ଶରଣ ମୋର କି ଅଛି ଭାବନା ?
ଜଣାଇବ ସଭିଙ୍କୁ ମୋ ଅନ୍ତିମ ଜୁହାର,
ସମସ୍ତଙ୍କ ଭୁଲେ ଅବା ମୁହିଁ କେଉଁ ଛାର ।
ସଭିଙ୍କୁ କଲ୍ୟାଣ ଏବେ ଭବୁ ଯିବ ତରି
ସୌଭାଗ୍ୟ ମୋହର ଦେଶ କର୍ମେ ହେଲି ବଳି ।
ନ କରିବ ଶୋକ ବାବୁ ନ କରିବ ଦୁଃଖ,
ମରଣେ ଆନନ୍ଦ ମୋର, ପାଉ ମୁକ୍ତି ସୁଖ ।

× × ×

ଲୋତକେ ବନ୍ଦୀଙ୍କୁ ନେଲେ ତହୁଁ ତିନ ବନ୍ଧୁ,
ଉଛୁଳି ଉଠିଲା ତାଙ୍କ ହୃଦେ ଦୁଃଖ ସିନ୍ଧୁ;
ନୟନୁ ଲୋତକ ଧାରେ ଯାଏ ଦୁଃଖ ଝରି,
ଦେଖନ୍ତି ଲକ୍ଷ୍ମଣ ଉଭା ପାଷାଣର ସରି ।

ଦେବଭାବେ ଲକ୍ଷ୍ମଣରେ କଲେ ସଂଭାଷଣ,
ପୂଜିଲେ ଅନ୍ତରେ ତାରେ ଲୋତକ-ନୟନ,
ଘେନିଲେ ମେଲାଣି କରି ଶେଷ ଦରଶନ,
ଅନୁଭବୀ ସିନା ବୁଝେ ବିଚ୍ଛେଦ କଷଣ ?

ଲକ୍ଷ୍ମଣ ନୟନେ ନାହିଁ ଲୋତକ ସଞ୍ଚର,
ଦିବ୍ୟ ନେତ୍ରେ ଦେଖେ ସେହୁ ମରଣ-ସଂଭାର ।
ବିଭୁ ସଂଗୀତେ ସେ ପୁଣି ହୋଇଲା ବିଭୋର,
ସାରା ନିଶୀ ଉଠେ ତା'ର ସଙ୍ଗୀତ ଝଙ୍କାର ।

ନାହିଁ ତା'ର କ୍ଷୁଧା ତୃଷା ନୟନେ ପଲକ,
ନିଦ୍ରା ଦେବୀ ଦୁଃଖ ଭରେ ଭଜିଲେ କି ଦକ
ନିସ୍ତବ୍ଧ ଧରଣୀ ସ୍ଥିର ଗଗନ ପବନ,
ବନ୍ଦୀପୁରେ ସର୍ବହୃଦେ ଦାରୁଣ କଂପନ ।

ନିଶୀ ଶେଷଭାଗେ ଖରେ ଆସିଲେ ଘାତକେ,
ରାଷ୍ଟ୍ର ପ୍ରତିନିଧି ଦଳ ଆସିଲେ ପଲକେ;
ଫିଟିଲା ଲୁହା କବାଟ ଦେଖିଲେ ଲକ୍ଷ୍ମଣ,
ହରିନାମେ ଉନମତ୍ତ ନାମ ତା ଶରଣ ।

ଧଇଲେ ତା' ଦୁଇବାହୁ ଦୁଇ କଟୁଆଳ,
ବୋଇଲେ-ଯିବାକୁ ହେବ ଆସିଗଲା କାଳ,
ଗଂଭୀରେ ଶୁଣିଲା ବୀର ଖରେ ହେଲା ଠିଆ,
ବନ୍ଦି ପାଲଟାଇ ଦୂତେ ଆଣିଲେ ମାଠିଆ ।

ଢାଳିଦେଲେ ପାଣି ଏଥି ଶୁଦ୍ଧ ହେଲା ବଳ,
ପାନୀୟ ପିଆଇ ନେବେ ଫାଶୀ-ଘରେ ଧରି,
ପାନୀୟରେ ପ୍ରୟୋଜନ ନାହିଁ ବାବୁ ମୋର,
ଲଗାଅ ଚଞ୍ଚଳ ଗଳେ ଆଣି ଫାଶୀ ଡୋର ।

ଭିଡ଼ି ନେଲେ ଦୁଇହାତ ପଛୁ ଦେଲେ କଡ଼ି,
ସଶସ୍ତ୍ର ପ୍ରହରୀ ଘେରି ନେଲେ ବେଶ କରି ।

ହରିନାମ ଡାକି ଯେବେ ଚଳିଲା ସେ ବୀର,
ବନ୍ଦୀଙ୍କ ବିପ୍ଳବ ନାଦେ ଭାଙ୍ଗେ କି ପ୍ରାଚୀର !
ଫାଶୀଘର ଦ୍ୱାରେ ଠିଆ ସଶସ୍ତ୍ର ପ୍ରହରୀ,
ରାଷ୍ଟ୍ର-ପ୍ରତିନିଧି ରୂପେ ତହିଁ କର୍ମଚାରୀ ।

ଭେଷଜ ବେଭାରୀ ସହ ବନ୍ଦୀର ରକ୍ଷକେ,
ସର୍ବେ ରହିଛନ୍ତି ଘେରି ଅନାଉଁ ପଲକେ,
ଉଭା କଲେ ନେଇ ତହିଁ ଲକ୍ଷ୍ମଣ ନାୟକେ,
ଦେଖିଲେ ବନ୍ଦୀର ମୁଖ ଆଲୋକ ଝଲକେ ।

ମୁଖେ ହରିନାମ, ଦେଖେ ଯମଦୂତ ସରି,
ଅନ୍ଧକାରେ ଠୁଳ, ପାହି ଆସୁଛି ଶର୍ବରୀ ।
କର୍ମଚାରୀ ବଖାଣିଲେ ଠିକେ ଦଣ୍ଡାଦେଶ,
ନିଜ ଦୋଷେ ଶାସ୍ତି ତୋର, ନାହିଁ ଏଥି ଲେଶ ।

ଅପ୍ରାଧ କାହାର ଏ ତ ଆଇନ ବିଚାର
ବୋଲି ପଚାରନ୍ତେ—ତୋର ଅଛି କହିବାର ?
ଗଂଭୀରେ କହିଲା ବୀର, ଶୁଣ ଦେଶବାସୀ !
ଦୋଷନାହିଁ ନିର୍ଦ୍ଦୋଷରେ ପାଉଅଛୁ ଫାଶୀ !

କହନ୍ତେ ପଲକେ ତା'ରେ ଧଇଲେ ଘାତକେ,
ଓଟାରି ପୂରାଇ ଦେଲେ ଫାଶୀଘର କକ୍ଷେ,
ବାନ୍ଧିଦେଲେ କଳାକନା ମୁଖେ ତା'ର ଆଣ୍ଠେ,
ନିମିଷେ ଚଢ଼ାଇ ଦେଲେ ନେଇ ଫାଶୀକାଠେ ।

ଘାତକ ପିନ୍ଧାଏ ଗଳେ କାଳ ଫାଶୀ ରସି,
ବୀର ବୀର-ଦର୍ପେ ଉଭା ଦେଖେ ଦୂରୁ ହସି,
ଆସଇ ମରଣ-ରଥ ସିଂହାସନ ତୋଳି,
ଘାତକ ଓଟାରି ଦେଲା ଫାଶୀର ଅର୍ଗଳି ।

ମୁଖେ ହରିନାମ ବୀର ଚାହେଁ ଶୂନ୍ୟ ପଥେ—
ରାଷ୍ଟ୍ର ଅନ୍ଧକୂପେ ନରବଳି ଏ ନେପଥ୍ୟେ ।

'ହ-ଅ-ର-ଇ' ବୋଲୁ ଉଡ଼ିଗଲା ବୀର ପିଣ୍ଡପ୍ରାଣ,
ସହାସ୍ୟେ ବସିଲା ଯାଇ ମୃତ୍ୟୁ ସିଂହାସନ ।

ଅନନ୍ତ ଆକାଶ କ୍ଷଣେ ଉଜ୍ଜ୍ୱଳ ଉଠିଲା
ପଞ୍ଚଭୂତ ଆତ୍ମା ପରମାତ୍ମାରେ ମିଶିଲା ।
ମାନବ ମହୀରୁହେ ଶୋକ ଗ୍ରସ୍ତ ଗଲା ମାଡ଼ି,
କଳରବେ କାନ୍ଦି କାନ୍ଦି ପକ୍ଷୀ ଧାଡ଼ି ଧାଡ଼ି ।

ଦଶେ କ ସହାର ଶବ୍ଦ ଭୀମ-ନଦାରୁଣ ।
ଶୋକରେ ଅଧୀର ବନ୍ଦୀ-ଆହାରବେ ପୂର୍ଣ୍ଣ ।
ବିପ୍ଳବ ନନାଦେ କମ୍ପେ ଗଗନ ପବନ ।
ହୃତ୍ସ୍ପନ୍ଦେ ଶୋଚନାର କରୁଣ ସ୍ପନ୍ଦନ !

ହୃଦ ନେତ୍ର କୋଣୁ ଝରେ ତପ୍ତ ଅଶ୍ରୁଧାର,
ବିଷାଦେ ଲୁଚିଲା କାହିଁ ଅଧୀର ଶର୍ବରୀ,
ନ ଦଶିଲା ରବି ରଶ୍ମି ନ ହେଲେ ପାଦପ,
ନ ସ୍ଫୁରଇ ମୁଖୁ ବାଣୀ, ଧମନୀର କମ୍ପ ।

ସ୍ଥିର, ନିଶ୍ଚଳ ପ୍ରକୃତ ମାନବ ହୃଦୟ—
ବିଶ୍ୱାସେ ଲୋଡ଼ଇ ବନ୍ଧୁ ଆଶ୍ୱାସେ ଆଶ୍ରୟ ।
ତା ମରଣ ପ୍ରତିହିଂସା ତୀବ୍ର କ୍ରୋଧାନଳ,
ବୁଝେ କି ଶାସନ ଏହା ବିପରୀତ ଫଳ ?

ଶାସନ ବିଧାନେ ଯେବେ ଅଦୋଷେ ନିଧନ,
ଫାଶୀକାଠେ ହେଲା ବଳି, ବରିଲା ମରଣ—
ବିଜୟ ପତାକା ଭବେ ଉଡ଼ାଇଲା ସେହି,
ମରଣେ ଅମର ହୋଇ ଯୁଗ ଯୁଗ ରହି ।

---

୨୯ । ୩ । ୪୩ ରେ ଫାଶୀ
(ସହିଦ ଲକ୍ଷ୍ମଣ ନାୟକଙ୍କ ଫାଶୀର ଅବ୍ୟବହିତ ପୂର୍ବରୁ ବ୍ରହ୍ମପୁର ଜେଲରେ ରଚିତ : ରଚନାକାଳ : ୧୯୪୩)

# ବିଜନ ପଥେ, ନିଜନ ଘାଟେ

ବିଜନ ପଥେ, ନିଜନ ଘାଟେ,
ନିଶୂନ୍ୟ ଏ ଧରାପ୍ରାନ୍ତେ, କେହ୍ନି ନ ଦିଶେ;
ଜୀବ ମାନବ, ସର୍ବେ ନୀରବ,
କରୁଣ କାକଳୀ ଏକା ମରୁତେ ମିଶେ । ୧ ।

କାକ ବକାଳି, ମରାଳମାଳି
ନୀଳ ନଭେ ଭାସିଯା'ନ୍ତି ବଉଦ ବୁକେ,
ଚୂତ ମୁକୁଳେ କାହିଁ ସେ ଦୂରେ,
କଳକଣ୍ଠେ କୁହୁତାନେ କୋଇଲି ଡାକେ । ୨ ।

କିଏ ସେ ଦୂରେ କଳ ଶିଶିରେ
ମୁକୁଳିତ କେଶପାଶ ନାରୀ ରୂପେ ସେ,
ଉଇଁବେ ଭାନୁ ମଣିକ ସ୍ନାନୁ
ଫେରେ ସରୋବର ନୀର ଧରି କଳସେ । ୩ ।

କୁଳକାମିନୀ ଦେଖି ଯାମିନୀ
ଶେଷ, ଗ୍ରାମ ଭାଗେ ବେଗେ ଲାଜେ ଝିପସେ,
ନୀଳ ଗଗନେ ଚପଳା ସମେ
ଶ୍ୟାମଳ ମ୍ୱାଳେ ନିମିଷେ ମିଶିଗଲା ସେ । ୪ ।

ଦୂର କାନ୍ତାରେ ତାଳ ଜମ୍ବୀରେ
ମୁଣ୍ଡ ଟେକି ଉଭା ଠାବେ ଠାବେ ନୀରବେ,
ଶୁଷ୍କ ସରିତ ଶୁଖିଛି କ୍ଷେତ
ଖଣ୍ଡ ଦୂରେ ଉଭା ଏକା ଗିରି ଗରବେ । ୫ ।

କେଦାର ଭୂଇଁ ଯାଇଁଛି ଛୁଇଁ
ଏକ ପଦୀ ପଥ ବୁଲି ଗିରି ଶିରଗେ,
ରୁକ୍ଷ ସେ ଗିରି ଭୁଞ୍ଜ ତା ଶିରୀ
ଖ୍ୟପଣେ ସେ ଶିଳା ପାଶେ ଯିବ କିଏ ସେ । ୬ ।

ସୁଦୂରେ ଆଗେ ମୋ ପୁରୋଭାଗେ
ଜନ କୋଳାହଳ ବାଜେ ଜନପଦ ସେ,
ଧୀର ଚରଣେ ଉଦାସ ମନେ
କଏ କାମିନୀ ଆସନ୍ତ କମ୍ପା ବରସେ । ୭ ।

ଶିରେ ତାଙ୍କର କେଶ ମଞ୍ଜୁଳ
ଜୂଡ଼ାରେ ଜଡ଼ିତ ସେ କି ଚିକ୍କଣ ଦିଶେ,
ଅଙ୍ଗରେ ଶାଢ଼ୀ ରହିଛି ଜଡ଼ି
ନୀଳ ସୁନୀଳ ଶ୍ୟାମଳ ଭଳି ଭଳି ସେ । ୮ ।

କେତେ ମଞ୍ଜୁଳେ ଅଞ୍ଚଳ ଦୋଳେ
ମନ୍ଦ ମରୁତ ଖେଳାଏ ସେ ଅଙ୍ଗବାସେ,
ପୁଲକ ଭରେ ପରଶି କରେ
ମଣେ କେଳି ଭୁଲେ ବାଳୀ ତା'ରେ ବିଳସେ । ୯ ।

ବେକରେ ଘେରି ବୁକୁରେ ଛୋରି,
ମଣ୍ଡିତ ବସନ କଣ୍ଠୀ ପାଦପୁରତେ,
ବିଜୁଳି ଛୁଟେ ଅଂଗେ ସେ ଲଟେ
କଟି ମେଖଳା କରିଛି କାନ-ପଣତେ । ୧୦ ।

ବାହୁ ବଲ୍ଲରୀ ମୃକୁଳେ ଦୋଳି
କ୍ଷଣେ କ୍ଷଣେ ଖେଳି କିବା ସଙ୍କେତେ ଭାଷେ,
ଅଞ୍ଜନ ଆଖି ରହିଛି ଲଖି,
କେତେବେଳେ କେଉଁ ଦିଶେ କା'ର କି ଆଶେ । ୧୧ ।

ବର୍ତ୍ତୁଳ ବାହା ଉଜ୍ଜ୍ୱଳ ଗୃହାଁ
ଆଭରଣ ଦିନେ କେତେ ମନୋହାରୀ ସେ,
ଉନ୍ନତ ଉରୁ ବଦନ ଗୁରୁ
ଗଳାରେ କାଇଁଚ ମାଳ କି ଶୋଭା ଦିଶେ । ୧୨ ।

ଠିକ୍ ବର୍ତ୍ତୁଳ ଥନ ଯୁଗଳ
ପଦକ୍ଷେପେ କମ୍ପି ଉଠେ ଥରେ ନିଃଶ୍ୱାସ,
ସେ କାଚ ଚୂଡ଼ି କରକୁ ଜଡ଼ି
ଝିକମିକ ରଶ୍ମି ଘଟେ ଜ୍ୟୋତି ପ୍ରକାଶେ । ୧୩ ।

ଯୌବନ ଝଳ ପଡ଼େ ଝାଉଁଳ
ବଦନ ଅଧର ଶୁଷ୍କ କମ୍ପା ଥରସେ ।
ସମବୟସୀ ସଭେ ପ୍ରେୟସୀ
ଠୁଳେ ଘୂଳୁଁ କେହି କେଭେ କମ୍ପା ନ ହସେ । ୧୪ ।

କା' ଅଙ୍ଗ ଝଳ ଚକ୍ଣ କାଳ
କେ ଶ୍ୟାମାଙ୍ଗୀ ସଙ୍ଗିନୀଙ୍କୁ ଚୂହେଁ ସଙ୍କେତେ,
କା'ରେ ବାର୍ଣୀ କେ ଅବା ଗୁଣି
କ ବୋଲନ୍ତି ଭସି ଆସେ ମଳୟ ସ୍ରୋତେ । ୧୫ ।

ନୟନ ମିଚେ କେ କିବା ବୋଲେ ?
ସଖୀ ଓଠ ଧର କେ କି ଆଶ୍ୱାସି କହେ ;
ବେଦନା ଭରେ କେ କିବା ଭଣେ ?
ଶିଥିଳ ଚରଣ, ଡ଼ାଳେ ମଉନେ ରହେ । ୧୬ ।

କର ଯୁଗଳ ଆପଣା ଗଳେ
କେବା ଜଡ଼ାଇ ଅନାଏ ଆକାଶ ଭାଗେ;
ଗଣ୍ଡେ ଅଧରେ କେ ଦେଇ କରେ
କି କହି ଖେଳାଏ ପୁଣି ନୟନ ସରାଗେ । ୧୭ ।

କୁଞ୍ଚିତ ବାସେ କେ ନେତ୍ର ପୋଛେ,
କେ ବୁକୁରେ କର ଦେଇ ଦଇବେ ଡାକେ,
କାହିଁ ବା ଚଳ ଆସନ୍ତି ବାଳୀ
ବ୍ୟଥିତ ପରାଣ ତାଙ୍କ, ଦୁଃଖ ଦେଲ କେ । ୧୮ ।

ଏମନ୍ତେ ଗୃହୁଁ ନିକଟ ହେଉ
ଚଞ୍ଚଳେ ଚଳିଲେ ବାଳୀ ଗିରି ସମୀପେ,
ବନ୍ଧୁର ତଳା ଲଙ୍ଘିଲେ ବାଳା
ହାତେ ହାଣ୍ଡୁଡ଼ି ବସିଣ ପ୍ରଖର ତାପେ । ୧୯ ।

କ୍ରମେ ତପନ ତେଜ କୋପନ
ଦେଖୁ ଦେଖୁ ଗିରି ତନୁ ଅଧିକ ତାତେ;
ପାଦପହୀନ ଆଶ୍ରୟ ଶୂନ୍ୟ
ଦହି ହୁଏ ଦେହ ତହିଁ ତପତ ବାତେ । ୨୦ ।

ଏକେ ଅବଳା ଦୁଃଖେ ବିହ୍ୱଳା
ତହିଁ ପୁଣି ପିଠେ ଶିଳା କରି ତଳପେ;
ତହିଁ ବା କେହି ନଥାଇରେ ଥୋଇ
ଥାନୁ ଥାନେ ଆଣେ ଶିଳା ଥୋଇ କଳପେ । ୨୧ ।

ବୋଲେ କେ ଚମ୍ପା ! ଚଞ୍ଚଳ ଉଠା,
ଠିକାଦାର ଲୋକ ଆସି ମାରିବ ନାତେ,
ଖଣ୍ଡିତ ଶିଳା ବୋହନ୍ତେ ବାଳା
ଖଣ୍ଡଦୂରେ ଥୋଇ ମାରେ ଚରଣ ଘାତେ । ୨୨ ।

ଦହନୁ ଝାଳ ବହେ ପ୍ରବଳ
ଗୃହୁଁ ଗୃହୁଁ ଅଙ୍ଗବାସ ବୁଡ଼େ ଝାଳରେ,
ବିରାମ ନାହିଁ ଆନ ଡାକଇ
ବେଗେ ବେଗେ ନେ ଲୋ ଚମ୍ପା ! ବସିଲୁ ଫେରେ ? । ୨୩ ।

ଫାଟି ତା କର ରକତ ଧାର
ବହିଯାଏ ଦୁଃଖେ ବାଳୀ ବସି ନିରେଖେ,
କ୍ଷଣକେ ଥକି, ସଜଳ ଆଖି
କହେ, "ଆଉ ନ ପାରିବ ସହି ଗୋ ଦେଖେ ।" ୨୪ ।

ଗଲା ଲୋ ଫାଟି ପଥରେ ପିଟି,
ଦେଖ ଗୋ ରକତ ଧାର ବହେ ସେ କେତେ,
ବହି କି କଲା କି ଦୁଃଖ ଦେଲା
ପେଟ ପାଇଁ ହିଏ ଦୁଃଖ କି ଦୋଷେ ଏତେ ? । ୨୫ ।

ହାତୁ ହ'ହାତ ହେଲା ସଙ୍ଗାତ
ହଇବ କୋଳକୁ ଦେଲା ମୋରେ ବାଳୁତେ;
ନାହିଁଟି ବାସ ନାହିଁ ପରାସ
ପରଦ୍ୱାର ପରପିଣ୍ଡା ଥାଉଁ ଗିରସ୍ତେ । ୨୬ ।

"ଆଲୋ ଭଉଣୀ ଦେଖନ୍ତୁ ମଣି
ଆମର ଗାଁରୁ ଗଲା ଭଇଁର ପୁରେ,
"ବୋଲାଏ ସେହୁ ପାଞ୍ଜିଆ ବୋହୂ
ଚନ୍ଦ୍ର ସୂର୍ଯ୍ୟ ନ ଦେଖନ୍ତି ଘର ବାହାରେ । ୨୭ ।

"ଖଟ ପଲଙ୍କ ତୂଳି ତଳପ
ଶେଯେ ଶୋଇ ହିନ ହିଏ ଦୁଃଖ ନ ଜାଣେ;
"ଧନ ଦରବ ସଂସାର ଭୋଗ
ଘରବର ସବୁ ମିଳେ କପାଳ ଗୁଣେ । ୨୮ ।

ସତେ ଭଉଣୀ ଆମର ମଣି
କେଡ଼େ ସୁଖେ କାଳ କାଟେ, ଆମକୁ ଦେଖେ;
ସେଇ ଗାଁ ଝିଅ କି ଦୁଃଖ କହ
ବହି ଲହିଥିଲା ଭାଲେ ପଥର ଟେକେ । ୨୯ ।

ଆମ ସଂସାର ମୂଳିଆ ପୁର,
ଚୂଲି ଗୁଳେ ବାସ ନାହିଁ; ଆମ ଗିରସ୍ତେ—
କି ହୀନମାନ ! ଧିକ ଜୀବନ !
ଖୁଦ ପୋଷେ ନାହିଁ ଘରେ ପଥି ନିମନ୍ତେ । ୩୦ ।

ସଦା ଏ ଦୁଃଖ କପାଳ ଲେଖ,
ଦିନେ ମୂଲ ନ ଲଗିଲେ ଉପାସ ପେଟେ,
ଗିରସ୍ତ କଷ୍ଟ ଆରେ ସଙ୍ଗାତ !
କ କହିବ ବସୃରଲେ ମୁର୍ଦ୍ଧନା ଫାଟେ । ୩୧ ।

ନିତ ମଜୁର ଖୋଜନ୍ତ ବୁଲି
କେଉଁଦିନ ମିଳେ କେଉଁଦିନ ନଥାଏ;
ହେଲେ ଦି'ଅଣା ପଇସା ପିନା,
ଅବା କାନରେ ବାନ୍ଧି ଆସିବେ ଢ଼ିବାଏ । ୩୨ ।

ସଞ୍ଜ ସକାଳ ମୁଠେ ପଖାଳ
ଖାଇ ଯାନ୍ତ ନାହିଁ ଦେଖା ଦିନ ଯାକରେ,
ଧରିଛୁ ହାତ ସେ ମୋ ଗିରସ୍ତ
ଘରଯା ଗିରସ୍ତ ସେବା ପିନାଟି କରେ । ୩୩ ।

ମୁଁ ନିତପ୍ରତି ପଥର ଗୋଟି
ଘଙ୍ଗି ମୂଲ ନେବା ପାଇଁ ଆସୁଛି ଏଥେ;
ଶୂନ୍ୟ କୁଡ଼ିଆ ପୁଅ ବାଳିଆ
ଗୁଡ଼ି ଦେଇ ଆସୁଅଛି ନାହିଁ କେ ସାଥେ । ୩୪ ।

ବାଳିଆ ବାପା ଆସନ୍ତ ଏକା
ବାସି ପଖାଳ ମୁଠାଏ ବାଢ଼ନ୍ତ ହାତେ,
ତୋରାଣି ପୋଷେ ପିଇ ମୁଁ ଆସେ
ଫେରିବ ପିନାଲେ ଯାଇ ସଞ୍ଜ ଆସନ୍ତେ । ୩୫ ।

ବାଳିଆ ମୋର ପର ଦୁଆର
ଆଶ୍ରା କରି ଦିନ ବଞ୍ଚେ ଗୃକର ରୂପେ,
ବାଳୁତ ପୁଅ ଡାକିଲେ ଲୁହ
ସମ୍ଭାଳି ନୁହେଁ ଲେ ସହି ବୁକୁ ଦୁଲୁକେ । ୩୬ ।

ମାଆ ମୁଁ ଥାଇ ଛେଉଣ୍ଡ ସେହ୍ନ
ବାଳୁତ କୁମର ପର ଦୁଆର ଖଟେ,
ପେଟକୁ ଦାନା ପିଠିକୁ କନା
ଦେଇ ପୋଷି ନ ପାରୁଛୁ ପୁଅ ବକଟେ । ୩୭ ।

ଏମନ୍ତ ଦୁଃଖୀ ଅଛ କି ଦେଖି
ପେଟ ପାଇଁ ଦାଣ୍ଡେ ବୁଲେ ଯୁବା ବୟସେ,
ମୋ ସାଙ୍ଗୁ ମଣି କୁଳ-କାମିନୀ
ରୂପେ ଘର ବର ଭୋଗି ଅଛୁ ଅଇସେ । ୩୮ ।

ବାଳୁତ କାଳେ ସେ ମଣି ଭୁଲେ
ଲୁଚକାଳି ବୋହୂଘରର ଖେଳଛୁ କେତେ,
ଘରେ ଦାଣ୍ଡରେ ପୋଖରୀ କୂଳେ
ଖେଳୁ ବୁଲୁ କଥା ହେଉ ଦିବସ ବିତେ । ୩୯ ।

କାହିଁ ସେ ଦିନ ସବୁ ଲୋ ଭଉଣୀ !
କାହିଁ ମଣି, କାହିଁ ମୁଁ ! କି କର୍ମ ନ କରେ !
ସେ ସାଆନ୍ତାଣୀ, ମୁଁ ମୂଲିଆଣୀ
ପେଟ ଚିନ୍ତାରେ ମୋ ଆଜ ଦିନ ନ ସରେ । ୪୦ ।

ସତେ କି ହର ! ଏ ଦୁଃଖ ଫେର
ଯିବ ଜୀବନ ହେଲଣି ଭାର ହେ ମୋତେ;
ଏମନ୍ତ ବାଳା ବୋଲୁଁ କାନ୍ଦିଲା—
ଦରଦର ଲୁହ ଧାରେ ବଦନ ତିନ୍ତେ । ୪୧ ।

ଚମ୍ପା କାନ୍ଦଣା ଦେଖି ଦଆଁଣା
କାମ ଛାଡ଼ି ଦେଇଆସି ବସି ପାଶରେ,
ବୋଲେ "ଭଉଣୀ ହୋଉଲେ ତୁନି,
କେତେ ରକ୍ତ ବୋହିଯାଏ ଆହା ମୁଁ ମରେ ।" ୪୨ ।

ପଣତ କାନ ବୁଡ଼ାଇ ଧନ୍ୟା
କଜ୍ଜ୍ୱଳ ମିଶ୍ରିତ ଅଶ୍ରୁଧାର ପୋଛନ୍ତେ,
ଧଇଲା ସଖୀ କରକୁ ଟେକ
ଔଷଦ ଦେଲା ସେ ଧୂଳି ଝାଡ଼ଣ ଛଡେ । ୪୩ ।

ଅଭିମାନନୀ ଦୁଃଖେ ଦୁଃଖିନୀ
ହୋଇ ଆନ ସଙ୍ଗିନୀ ଏଆସିଲେ ପାଶେ,
ସଭିଏଁ ବସି ତା'ରେ ଆଶ୍ୱାସି
କଥା ହେଉଁ ଦୁଃଖେ ଏକ ଆନକୁ ଭାଷେ । ୪୪ ।

ବିଧି ଯା ଭାଲେ ଲିହିଛି ଭଲେ
ଆନ କେ କରିବ ସହି ସେ କର୍ମଫଳେ,
ନୁହେ ବିହିତ ହେବା ଭାବିତ
ସୁଖ ଦୁଃଖ ସବୁ ଆସେ ଦଇବ ବଳେ । ୪୫ ।

ଧନ ଦରବ ସୁଖ ସୌଭାଗ୍ୟ
ଆସେ ଯାଏ କେଉଁ ଭାବେ କେହି ନ ଜାଣେ,
ପାଠ ପୌରୁଷ ଥାଇ ବା କସ
ଭାଗ୍ୟଠାରେ ସବୁ ବୁଦ୍ଧି ହାରିଲେ ମାନେ । ୪୬ ।

ସୀତା ସାବିତ୍ରୀ ଦ୍ରୌପଦୀ ସତୀ
ନଳ ଦମୟନ୍ତୀ ଦୁଃଖ ଲେଖା ପୁରାଣେ,
"ରାମ ଲକ୍ଷ୍ମଣ ରାଜନନ୍ଦନ
ଚଉଦ ବରଷ ପୁଣି ବୁଲିଲେ ବନେ । ୪୭ ।

ନ କରେ ବିଧି କି ଭଲ ସହି !
ସୀତା ପରି ସତୀ ବନ୍ଦୀ ଅସୁର ପୁରେ,
ବିକଳେ ସତୀ ଦିବସ ରାତି
ରାମ ପଦ ଚିନ୍ତି ଡାକେ ଧର୍ମେ ଆତୁରେ । ୪୮ ।

ଧର୍ମ ରଖିଲା ଫାଶୁ ଫିଟିଲା
ରାମ ପରା ଧୀର ପତି କେତେ ସ୍ତୁତିଲେ,
ହେଲା ମିଳନ କେଡ଼େ ଶୋଭନ
ହସିଲା ଅଯୋଧ୍ୟା ପୁରୀ; ଲୋକେ ରଟିଲେ । ୪୯ ।

କାହିଁକି ନିନ୍ଦା ? ବିଚ୍ଛେଦ ବାଧା
ଘୋର ଶରୀରେ ସେ ସୀତା ପୁଣି ଭୁଞ୍ଜିଲେ;
ବନସ୍ତେ ପତି ତେଜିଲେ ସତୀ
ଦୁଃଖ ଅଭିମାନେ ସୀତା ଶୋକେ ସଢ଼ିଲେ । ୫୦ ।

ଆଣିଲେ କାନ୍ତା ରାମ ଭରତ
ସଜଳ ନୟନ ପତିବ୍ରତା ସୀତାରେ,
ହଅନ୍ତେ ଧରି ନିଆଁରେ ପୋଡ଼ି
ପରଖନ୍ତେ ହେଲେ ସତୀ ଦୁଃଖ ନ ସରେ । ୫୧ ।

ଅଭିମାନିନୀ ପତିଙ୍କୁ ଚାହିଁ
ବୋଇଲେ ମୋ ନାହିଁ ସ୍ଥାନ ଏ ଭବ ପାରେ,
ତୁମ ଚରଣ ଧ୍ୟାୟୁ ମୋ ମନ—”
ବୋଲୁ ସତୀ ପୃଥ୍ୱୀ ଫାଟି ଗଲେ ପାତାଳେ । ୫୨ ।

ଅଯୋଧ୍ୟା ରାଣ ସ୍ୱାମୀ ଶ୍ରୀରାମ
ଥାଉଁ ରାଜରାଣୀ କି ଦୁଃଖ ନ ସହିଲେ !
ଏତହୁଁ ବଳି କେ ପାରେ କଳି
ଦାରୁଣ ଦୁଃଖଲେ ସହି ଭଲ ମହୀରେ । ୫୩ ।

ଥାଇଁ ତ ଶୁଣି ଶୈବ୍ୟା ରାଣୀ
ହରିଶ୍ଚନ୍ଦ୍ର ରାଜା ଫେରେ ଦାସ ହୋଇଲେ,
ମନକୁ ହେଜ ଓଡ଼ିଶା ରାଜା
ଦିବ୍ୟସିଂହ ଦେବ କିଆଁ ବେଢ଼ି ଘେନିଲେ । ୫୪ ।

ମଉଡ଼ମଣି କପାଳେ ପୁଣି
ବନ୍ଧା ଲହୁଥିଲା କଳାପାଣି ଭେଟିଲେ,
ଗଲା ରାଇଜ ନେଲେ ସାଇବ
ଓଡ଼ିଶା ମୁକୁଟମଣି ତଳେ ଲୋଟିଲେ । ୫୫ ।

କଳାପାହାଡ଼ ଲୁହାର ବାଡ଼
ଭାଙ୍ଗି ଦୂରକଲା ପଶି ଲକ୍ଷ୍ମୀଙ୍କ ପୁରେ,
ଶୁଣିଛୁ ଟିକି କପାଳ ଠୁଁକି
ମୁକୁନ୍ଦ ଦେବଙ୍କ ରାଣୀ ହେତା ପଶିଲେ । ୫୬ ।

ନଜେ ଶ୍ରୀହରି ଦୁଃଖକୁ ଝୁରି
ମାଧବୀ ଲତାରେ ଶୋଇ ପ୍ରାଣ ହାରିଲେ;
ଦେବତା ଜନ ଧନୀ ନିଧନ
କାହାକୁ କେବେ କି ଦୁଃଖ ଛାଡ଼ିଛି ଭଲେ । ୫୭ ।

ଆମେ କି ଶୁଦ୍ର କର୍ମା ବର୍ଗର
ଆମ ଦିନ ଯାଏ ଏକା ଖାଲି ଦୁଃଖରେ,
ଯାହାକୁ ସୁଖୀ ମଣୁଛୁ ସଖୀ,
ଦୁଃଖ ଘାରୁଥିବ ତା'ରେ କେତେ ପ୍ରକାରେ । ୫୮ ।

ବିଭ ବିପତ୍ତି ବ୍ୟାଧି ସମ୍ପତ୍ତି
ମହାକାଳ ଫଳ ସମ ପୀଡ଼ା ଭିତରେ;
ଧନ ଦରବ ଗର୍ବ ବିଭବ
ନୁହେ ସବୁବେଳେ ସୁଖ ହେଜେ ଚିତ୍ତରେ । ୫୯ ।

ଥାଇଟି ସ୍ୱାମୀ ବିପଥେ ଗମି
ଅକାର୍ଯ୍ୟେ ଅଧର୍ମେ ମାତି ପାପେ ସଢ଼ିଲେ,
ଘରଜା ହୋଇ କେମନ୍ତେ ସହି
ରହିବ ପତ୍ନୀଏ ଶାନ୍ତି ସମ୍ପଦ ଥିଲେ ? । ୬୦ ।

"ଏଡ଼ କଷଣ ଶ୍ରମ ତପନ
ଅଇହିରେ ଥାଉଁ ବସି ନିଜ ପିଣ୍ଡାରେ,
କି ସୁଖ ତହିଁ ରୋଗିଣୀ ହୋଇ
ଜୀବନ ସଢ଼ିଲି ଯେବେ ଧନ ଭଣ୍ଡାରେ । ୭୧ ।

ଦାଣ୍ଡ ଆଟୋପେ ତୂଳି ତଳପେ
କି ଆନନ୍ଦ ନାହିଁ ଯେବେ ସନ୍ତୋଷ ଘରେ;
ହାକିମ ପଣ ଅମାପ ଧନ
ସୁଖ ବୋଲି ନ ମଣିବୁ କେବେ ଭୁଲରେ । ୭୨ ।

ଅର୍ଥ ଅନର୍ଥ ଜାଣ ସଂଗାତ
ଉପୁଜାଇ ଘର ଭାଙ୍ଗେ ମୁହୂର୍ତ୍ତିକରେ,
ଗଜ କଚ୍ଛପ ଜନ୍ମ ବୃତ୍ତାନ୍ତ
ଶୁଣିଥିବୁ କି ହେଲେ ସେ ଧନ ମଦରେ । ୭୩ ।

କ୍ଷମତାଧନେ ଗରବ ମନେ
ଆସି ନାଶେ ମଣିଷର ବୁଦ୍ଧି ବିବେକେ,
ଧନରୁ ଲୋଭ ଲୋଭରୁ ଖର୍ବ
ହୁଏ ଶତପଣ ଲୋକ ବେଭାର ଦେଖେ । ୭୪ ।

ଅଇସେ ଯେହ୍ନୁ କାଳ କାଟଇ
ଅଇସ ନୁହଇ ତାହା ଅଳସ ମଣେ,
ଅଳସୁ ରୋଗ ସମ୍ପଦୁ ଲୋଭ
ଦୁଇପଦୁ ଦୁଃଖ ଦୁହେଁ ଦୁଇ ଶମନେ । ୭୫ ।

କି ହେବ ଧନେ ପଣ୍ଡ ଜୀବନେ
କୁଶଳେ ନ ଥିଲେ ସ୍ନେହ ରଖି ହୃଦରେ;
ଦୁଃଖୀ ସଂସାର ନୁହେ ଅସାର
ନିରଳସେ ନିଜ ବଶେ ଜୀବିକା କଲେ । ୭୬ ।

ଗିରସ୍ତେ ଭକ୍ତ ସନ୍ତାନେ ପ୍ରୀତି
ସ୍ନେହ ରଖିଥାଏ ଯେହ୍ନୁ ପଡ୍ରୋଶୀ ଜନେ,
ତାକୁ ନ ଲଗେ ଦୁଃଖ ଲୋ ଭବେ
ସବୁ ଦୁଃଖ ମେଣ୍ଟାଏ ସେ ଆପଣା ଶ୍ରମେ । ୬୭ ।

ଧନ ଦରବ ସ୍ୱର୍ଗକୁ ନେବ
ନାହିଁ ଯେବେ ସୁଖ ଦୁଃଖ ପତି ବେଭାରେ,
ଦାଣ୍ଡକୁ ଧମ ଶୁଣୁଛୁ ମଣି
ନ ଜାଣୁ କି ଦୁଃଖ ଆହା ମଣିକୁ ଘାରେ । ୬୮ ।

ଜାଣୁ ତ ମଣି କି ସୁଲକ୍ଷଣୀ
ଗାଆଁରେ କାହାକୁ ଦିନେ ୯ଅ ନ ବୋଲେ,
ସଦା ସୁହାସୀ ମଧୁର ଭଷୀ
ପିଲାଦିନେ ସାଙ୍ଗମେଳେ କେତେ ସେ ଖେଳେ । ୬୯ ।

ପୂଜାଅ ପର୍ବେ ମା’ ଯାହା ଦେବେ
ଆଣି ସାଙ୍ଗମେଳେ ବାଣ୍ଟି ଖାଇବ ସିଏ
ଯୁଁ ଦିନୁ ମଣି ଗଲା ପୂଆଣି
ଯେତେ ଅପମାନ ସହେ ଜାଣୁଛୁ କିଏ ! । ୭୦ ।

ଶଶୁର କ୍ରୋଧ ନଣନ୍ଦ ବାଦ
ଶାଶୁର ଗଞ୍ଜଣା ମଣି ସହି ନ ପାରେ,
ତା ବାପଘର ଦୁଃଖ ସଂସାର
ଶାଗ ପଖାଳେ ତା’ ମା’ ବଢ଼ାଇ ତା’ରେ । ୭୧ ।

ଏତରୁ ଏଡ଼େ କେଡ଼େ ଦୁଃଖରେ
କରି ଶେଷେ ଦେଲା ଜାତିଷ୍ଟୁ ବଡ଼ଘରେ,
ପାଞ୍ଜିଆ ଘର ନାଆଁ ତ ବଡ଼
ଧନ ଦେଖି ଦେଲା ଝିଅ ରହୁ ସୁଖରେ । ୭୨ ।

ଯେମନ୍ତ ଘର ତେମନ୍ତ ବର
ଲକ୍ଷକେ ଗୋଟିଏ ନଥିବେଟି ସତରେ,
ସୁନ୍ଦର ପଣେ ମଣି ସମାନେ
କେତେଟା ବା ଥିବେ କହ ତୋ ଦେଖନ୍ତରେ । ୭୩ ।

ରୂପ ସୁନ୍ଦର ଗୁଣ କି ଧୀର
କାମ ପାଇଟିରେ ତାକୁ କଏ କି ଖୁଣେ ?
ହେଲେ କି ହେବ ପୋଡ଼ା ଦଇବ
କି ଗୁପତ ଦୁଃଖେ ତାକୁ ଦହେ ଭୁ ଶୁଣେ । ୭୪ ।

ଶଶୁର ତା'ର ରଜାଙ୍କ ଘର
ପାଞ୍ଜିଆ ବୋଲି ବାଇଜେ ହାକମି କେଡ଼େ !
ଗର୍ଭିଣୀ ଗାଈ ବାଟ ଗୁଡ଼ରେ
ଧନ ଦଉଲତେ ସମ ଅଛୁ କେ ତେଡ଼େ । ୭୫ ।

ସେଥିରେ ହେଲେ ଲୋଭ କି ଗୁଡ଼େ
ଅଇଁଠା ହାତରେ ସୁଦ୍ଧା କୁଆ ନ ମାରେ,
ବୋଲନ୍ତି ଜନେ ପାଞ୍ଜିଆ ପଣେ
ସମ୍ପଦ ସମ୍ପାଦେ ସିନା ଭୋଗ କାହାରେ ? । ୭୬ ।

କି ହେବ ବଉ କୋଳକୁ ସୁତ
ପିଣ୍ଡପାଣି ଦେବାକୁ ତ ନାହିଁ ବକଟେ,
ଲୁଡ଼ୁକ ଦେଲି କାନ ନ ଦେଲି
କାହିଁ କାନେ ଲୁଡ଼ୁକ ନ ଦଏ ଓଲଟେ । ୭୭ ।

ସାତ ଦୁହିତା ଗଜ ମୁକୁତା
ଗୋଟି ଗୋଟି ଯିବେ ସବୁ ପର ଦୁଆରେ,
ଶୂନଅ ପୁର ପାଞ୍ଜିଆ ଘର
ଧନ କି ସ୍ୱରଗ ନିଏ କେବେ କାହାରେ ? । ୭୮ ।

ଦିବସ ଗଲା ପାଞ୍ଜିଆଣୀଟି
ଅଣ୍ଡିର ପିଲାଟି ପାଇଁ କି ଅଶୁରୁ ଛଳେ ?
ଚକରଧର ମୋ ଦୁଃଖ ଫେଡ଼ି
ବୋଲି ଡାକୁଥାଏ ସଦା ମରମ ଦୁଃଖେ । ୭୯ ।

ସତେ ସେ ହର ଶୁଣିଲା ପର
କେତେ କାଳେ ପିଲାଟିଏ ଦେଲେ ତା କୋଳେ,
ଦେଖି ଆନନ୍ଦ ହେଲା ଶବଦ
ପୁଅ ଜନମିଛି ଏବେ ପାଞ୍ଜିଆ କୁଳେ । ୮୦ ।

କୁମର ତାଙ୍କ କୁଳକୁ ଏକ
ସେତକ ଶଙ୍ଖାଳି ତା'ର ସାତ ଝିଅରେ,
ଚକରଧର ନାମ ପୁଅର
ପାଞ୍ଜିଆଣୀ ବତାଇଲେ ଗେଲବସରେ । ୮୧ ।

ଥିବା ସଂସାର ହାକମ ଘର
ଅଇସରେ ବଢ଼ି ଘର ଉଜ୍ଜଳ କଲେ,
ସୁନ୍ଦର ଠାଣି ଯୁବା ହେଲାଣି
ତହୁଁ ପାଞ୍ଜିଆ ଗଇଜେ କନ୍ୟା ଖୋଜିଲେ । ୮୨ ।

ଘର ଉଜୁଡ଼ି ଧନ ସମ୍ପତ୍ତି
ଦେଖି କଏ କେତେ ଆସି କୋଷ୍ଠୀ ସାଧିଲେ,
ଏକଇ ବଳା ତହିଁ ଅଚଳା
ସମ୍ପତ୍ତି ସମାନ ଏହା କାହାକୁ ମିଳେ ! । ୮୩ ।

ପାଞ୍ଜିଆ ବୁଢ଼ା ବସୁର କଲା
କି ମିଳିବ ଧନ ସଂପତ୍ତିରୁଟି ମୋତେ,
ଯାହା ଅର୍ଜିଛି ଖାଉ ସେ ବସି
ଦିହକ ବଢ଼ିବ ପୁଅ ବୋଲି ତ ଗୋଟେ । ୮୪ ।

କୁଳ କନିଆ ଯୌତୁକ ଦିଆ
ଥିଲା ଘର କାହିଁ; କିଏ କେତେ ବା ଦେବେ ?
ଘର ସୁନ୍ଦର ହୋଇବ ମୋର
ରୂପ ଗୁଣ ଦେଖି ବୋହୂ ଆଣିବ ଯେବେ । ୮୫ ।

ଏମନ୍ତ ଭାବ କାହୁଁ ବରଗି
ଉଡାଇ'ନେଲେ ସେ ମଣି ବାପାଙ୍କୁ ଖରେ,
କନିଆ ଦେଖି ମନରେ ସୁଖୀ
ହୋଇଛନ୍ତି, କନ୍ୟାଟି ଦିଅ ଆମ କୁମରେ । ୮୬ ।

ଜାଣ ତ ସବୁ କିସ କହିବୁ
କୁଳକୁ ଶଙ୍କା ଆମ ଚକରଧରେ,
ଜବାବ ଦେଲେ କୋଷ୍ଠୀ ଖୁଝିଲେ
ହାତଗଣ୍ଠି ପଡ଼ିଯିବ ସର୍ବଶୁଭରେ । ୮୭ ।

ଧନ ଦରବ କି ଅବା ଦେବ
ପାନ୍ଥୀ ପାଇଁ ସିନା ମନ ଭୁମର ଘରେ,
କୋରୁଆ ଗାଁଆ ପାନ୍ଥଙ୍କ ନାଁଆ
ଉଚ୍ଚ କୋଠି ବୋଲି ଡ଼ାକ ପଡ଼େ ଦାଣ୍ଡରେ । ୮୮ ।

ମଣିଆ ବାପା ଶୁଣି ତାଟକା
ମଣିକି ଦେଖିଲେ କାହୁଁ ପାଞ୍ଜିଆ କେବେ !
ବୋଇଲେ ସାଧୁ ଆମର ବନ୍ଧୁ
ସଉଭାଗ୍ୟ ଥିଲେ ସିନା ଆପଣ ହେବେ । ୮୯ ।

ଦେଖାନ୍ତୁ କୋଷ୍ଠୀ ଗାଁ ଲେଉଟା
ଜବାବ ଦେବ ମୁଁ ଥରେ ପଚୁର ଘରେ
ଫେରିଲେ ପାନ୍ଥେ ସେଦିନ ରାନ୍ଥେ
ବଖାଣି କହିଲେ ସବୁ ପାନିଆଣୀରେ । ୯୦ ।

ମଣିଆ ମାଆ ଶୁଣିଲେ ଯାହା
ମନକୁ ପାଉଛୁ ବୋଲି ଉତ୍ତର କଲେ,
ପ୍ରସଙ୍ଗ ଶୁଣି ମନରେ ଗୁଣି
ବସ୍ତୁରନ୍ତି ସୁଖେ ରହୁ ମଣିଟି ହେଲେ । ୯୧ ।

ଦିବସ ଗଲା ତା କଥା ଚିନ୍ତି
ଆଖି ଫୁଟି ଯାଉଥିଲା ଦେଖିଲେ ତାରେ,
ସିନା କୁଳୀନ ସଂପତ୍ତିହୀନ
ପାଇବଟିଏ ମିଳୁଛନ୍ତି କାହୁଁ ସଂଜରେ । ୯୨ ।

ପାଞ୍ଜି ଆ ଘର କେତେ ଖାତିର
ନିଜ ଆଡ଼ୁ ମାଗୁଛନ୍ତି କନିଆ ଯେବେ,
ନକର ନାହିଁ ସୁଝିଲା ଠାଇଁ
ନିର୍ବନ୍ଧ କରିଦିଅ ତୁଟାଇ ବେଗେ । ୯୩ ।

ଏମନ୍ତ କହି ମନେ ହେଜଇ
ମଣି ମୁଣ୍ଡେ ଦୁବ ପଡ଼ୁ ପ୍ରଭୁ କୃପାରେ,
କେମନ୍ତ ଘର ଧନକୁ ଦେଖି
ଗୋଟିଏ ବୋଲିତ ପୁଅ କି ଦୁଃଖ ତାରେ ! ୯୪ ।

ଶାଶୁ ଶଶୁର ନଣନ୍ଦ ମାଳ
ଯେଉଁ ଘରେ ଥିବେ ସିଏ ତାଙ୍କ ଦୁଃଖରେ,
ଠାକୁରେ କଲେ ଆୟୁଷ ଥିଲେ
କାଚ ସିନ୍ଦୂରରେ ମଣି ବଞ୍ଚୁ ସୁଖରେ । ୯୫ ।

ଦୁଃଖ ଫେରିବ କଥା ରହିବ
ଦୁଃଖୀ ପାଇବ ଘର ଝିଅ ଅଛୁ ଭଲରେ,
କରନ୍ତୁ ପ୍ରଭୁ ଘଟାନ୍ତୁ ସବୁ
ଖୋଳପାଲି ଦେବ ଚୂଡ଼ି ମାଆଙ୍କ ଘରେ । ୯୬ ।

ମଣିଟି ମୋର କେଡ଼େ କାତର
କଣ୍ଠା ହେଲଣି ସେ ବାପ ମାଆ ଦୁଃଖରେ
କେତେ ତ କାହିଁ ଖୋଜଲେ ଯାଇଁ
ନ ମିଳନ୍ତି ପାଦ ମାଡ଼ ଯଉତୁକରେ । ୯୭ ।

ଦୁଃଖୀର ଝିଅ ସିନା ଯୋଗିଅ
ଦୁଃଖୀ ଘରକୁ ସଂଜେ କ ସଂପତ୍ତି ମିଳେ,
କେମନ୍ତ ହବ ସୁଦଯ୍ୟା କବ
ଏ ପାଦ ଦଅନ୍ତି ମିଳେ କରମେ ଥିଲେ । ୯୮ ।

ପାଦ ଘରଣୀ ଡାକଣ ମଣି
କହିଲ ପ୍ରସଙ୍ଗ କଥା ମନ ଆନନ୍ଦେ,
'ଯାହାକୁ ଯିଏ ବନ୍ଧ ଖଞ୍ଜାଏ
ବାପମାଆ ଅନ୍ଧ ପ୍ରଜାପତି ସମ୍ବନ୍ଧେ ।' ୯୯ ।

ଶୁଣିଲା ମଣି ସେ ସୁଲକ୍ଷଣୀ
କ ଜାଣେ ସେ ବରଘର ପିଲାକାଳରେ,
ନୟନ ବୁଜ ଶରମେ ଧନ୍ଦ
ହୋଇ ଲେଉଟିଲ ମୁଖୁ ବାଣୀ ନ ସ୍ଫୁରେ । ୧୦୦ ।

ଜାଣୁ ଦଅଁଣା ! ବାଜ ବାଜଣା
ମଣି ବାହାଘର ହେଲ କେଡ଼େ ଠାଣିରେ,
ପାଞ୍ଜିଆ ଘର ଛତ୍ର ଗୃମର
ଧର ଆସି ବୋହୂ କଲେ ଆମ ମଣିରେ । ୧୦୧ ।

ବହୁ ଖରଚ ଉଭୟ ପକ୍ଷ
ପାଞ୍ଜିଆ ଭୁଲାଇ ଥିଲେ ଜବାବ ମତେ,
ଭୋଜ ବେଭାର ଶୋଭା ସମ୍ଭାର
ବଡ଼ ଆଡ଼ମ୍ବରେ କରଥିଲେ ସେ ସତେ ! ୧୦୨ ।

ଯେ ଦିନୁ ମଣି ଗଲା ପୁଆଣି
ଆଜକୁ ହେଲାଣି ଆସି ବରଷ ପାଞ୍ଚେ,
ଗାଁର ଝିଏ କାହ୍ନିଁ ବା କଏ
ବାହାହେବା ନ ହେବା ଭୁ ମନରେ ବାଛେ । ୧୦୩ ।

ସେଇ ଗାଁ । ଝିଏ ଆମେ ତିନହେଁ
କରମ ଗୁଣେ ଏଠାରେ ଏକାଠି ଥାଏଁ,
ଦୁଃଖ ସଂସାର ଯିଏ ଯାହାର
ଦୁଃଖ ପଡ଼ି ପେଟ ପୋଷି କାଳ କଟାଏଁ । ୧୦୪ ।

ଆହା ସେ ମଣି ଆମ ମିତଣୀ
କେତେକାଳୁ ଦେଖାଦେଖି ନାହିଁଟି ଥରେ,
ପାଞ୍ଜିଆ ବୋହୂ ବୋଲାଏ ସେଠୁ
ବାହାର ବଉବେ ମଣୁଅଛୁ କୁଶଳେ । ୧୦୫ ।



# ବନ୍ଧ୍ୟ ଓ ଅବନ୍ଧ୍ୟ

ଉତ୍‌କ୍ଷିପ୍ତ ଅଭିମାନେ ଅନାନ୍ତେ ଦୂର ପଥେ,
ରୁକ୍ଷ ନୀରସ ଯେତେ ଦେଖିଲ ଶୂନ୍ୟ ଖାଲି
ଦିଗ୍‌ବାଳ ଭାଗେ ଦୂରେ ଦିଶିଲା ନୀଳଗିରି,
ଘନରୁ ବଳି ଗାଢ଼ ବିଶେଷ ଶୋଭା ଶିରୀ ।

ନିର୍ମଳ ସମତଳ ଶୂନ୍ୟ ତା' ଚଉଦିଗ
ସେ ଏକା ଉଭା ସାର ମର୍ତ୍ତ୍ୟେ କି ସ୍ୱୟଂ ଶିବ !
ନିମିଷେ ସଞ୍ଚରିଲା ପ୍ରବଳ ପ୍ରଭଞ୍ଜନ,
ପଲକେ ଗଲା କାହିଁ ଏ କମ୍ପା ବିଡ଼ମ୍ବନ ।

ଆକାଶ ଅପଘନେ ବଉଦ ଦେଲା ଦେଖା
ସୁହାସୀ କପୋଳେ କି ଖିନ୍ନ ବିଷାଦ ରେଖା !
ଚଞ୍ଚଳ ବେଗେ ଗର୍ବେ ବଉଦ ଗଲା କାହିଁ,
ପଲକ ପାତେ ଦେଖେ ଗିରି ଶିରଷେ ଯାଇ !

ନିର୍ଭିକ ନୀଳଗିରି ଘନ ନୀଳିମା ରାଗେ
ଛାୟା ସଦୃଶେ ଘନ ଦୋଡ଼ାନ୍ତେ ଦୃଷ୍ଟି ଭାଗେ,
ଲୁଚାଇ ଦେଲା ଗିରି ଧୀରେ ଆପଣା ମୁଖ
ଛାର ବଉଦ ଶିରେ ବସିବା କେଡେ ଦୁଃଖ !

ଅଚଳ ମହାମେରୁ ସଗର୍ବେ ଉଭା ଚିର,
ଉଡ଼ନ୍ତା ଘନ ପୁଣି ଛୁଇଁଲା ତା'ର ଶିର !
ଗିରି ଗମ୍ଭୀରେ କିନ୍ତୁ ସହିଲା ଘନ ଦାଉ
ଘଡ଼ିକେ ଆସି ନେଲା ଘନେ ଓଟାରି ବାୟୁ ।

ପୁଣି ଠେକଲ୍ ଶିର ସଧୀରେ ମାଳଗିର
ବୋଇଲ୍ କମା ଗିର୍ ଘନେ ନ ଦେଲୁ ଚର ?
ବୋଇଲ୍ ଗିର ନୁହେଁ ଉଚତ ସାଧୁଜନେ
ଦାଉ ସାଧିବା ଘାନସ୍ଥାନେ ବଡ଼ମା ପଣେ ।

ମହତ ଜନ ସିନା ସହିବା ସଦାବଧି
ଅଳପ ଜନେ ବାଦ ମହତରେ ଅବଧି ।



ବ୍ରହ୍ମପୁର ଜେଲ : ତା ୨୨ । ୩ । ୪୪ରକ୍ଷ

# ମୋ ବୋଉ

ଦୁଃଖିମା ଦୁଃଖ ଆହା ପଡ଼ଇ ମନେ,
ପାଳିଲ ମତେ କେତେ ଦୁଃଖ ଯତନେ,

ନ ଥିଲେ କେହି ତା'ର ସାହା ଭରସା,
ଅଜଣା ଦେଶେ ଆସି ରଚିଲ ବସା ।

ଧରନ୍ତେ ଦଶମାସ ଗର୍ଭେ ମୋତେ,
ଆସିଲି ସିନା ତହିଁ ପେଟ ନିମନ୍ତେ ।

ଘୋର ବନସ୍ତ ତହିଁ, ଦୁର୍ଗମ ପଥ,
ଦୁଃଖୀ କୁଡ଼ିଆ, ଏକେ ଦେହ ନିଶଥ ।

ଏକାକୀ ସତୀ ସ୍ୱାମୀ ଚରଣ ସେବେ,
ଦେଖଇ ଆଉ ଦୁଃଖ କାହାରି ଯେବେ,

ଦେବ ଆପଣା ପେଟ ଅପୂରା ରଖି
ସହି ନ ପାରେ ଦୁଃଖ କାହାରି ଦେଖି ।

ଆପଣା ହାତେ ସବୁ କରଇ କାମ,
ଗୁଣ ଜାଣି କେ ଦେଲା 'କମଳା' ନାମ ।

ପୋଷେ ଫୁଟାଇ ଦେବ ସ୍ନେହେ ପରଶି
କହିବ ନାହିଁ, 'ନାହିଁ' ବୋଲି ଭରସି ।

ଦୁଃଖୀର ଉଚ୍ଚନୀଚ ବିଚାର ନାହିଁ,
ଦୁଃଖୀ ସେ, କାନ୍ଦେ ଦୁଃଖୀ ଜନଙ୍କ ପାଇଁ,

ଦୁଃଖ ଯାତନା ଯେଣୁ ଭୋଗିଛି ଆପେ,
ଅପର ଦୁଃଖ ନିଜ ହୃଦୟେ ମାପେ ।

ଆପଣା ପେଟକାଟି ଦେବ ଗୁପତେ,
ଦୁଃଖୀରେ ଦଏ କାରେ ନ ହେଉ ପ୍ରତେ ।

ସୁଗୃହିଣୀ ଜାଣଇ ଘର ଚଳାଇ,
ନଅଣ୍ଟ ବୋଲି କେହି ଜାଣିବ ନାହିଁ ।

ମର୍ଯ୍ୟାଦା ଜଗି ଘର ଗୃଳଇ ଦୁଃଖେ,
ମାଗିବ ନାହିଁ କାରେ କେବେ ଅଭାବେ ।

ଦୁଃଖେ ସମ୍ପାଦ କରି ସାଇତି ଥିବ,
ବିପଦ ବେଳେ ଦେଇ ଧାମ ରଖିବ ।

ସୁଖ ସମ୍ଭୋଗ ତାରେ ଅଟେ ସ୍ୱପନ,
ସେବା ଦେବାରେ ତା'ର ଆନନ୍ଦ ମନ ।

ଅଳପ ଭାଷିଣୀ, ତା' ସଙ୍ଗୀ-ସଙ୍ଗାତ—
ମେଳକୁ ବେଳନାହିଁ, ଶ୍ରମ ଏକାନ୍ତ ।

ବସନ ଭୂଷଣର ଶୋଭା ସମ୍ପଦ,
ନ ମିଳେ ତାରେ, ତାର କପାଳ ମନ୍ଦ ।

ପଡ଼ୋଶୀ ବୋଲୁଥିବେ ନିଜ ବିଭବେ,
ନାହିଁ ତା ଅଭିମାନ ତହିଁ କି ଲଭେ ।

ସଧବା ଖଦାରେ ତା ସଦା ସନ୍ତୋଷ,
କାଚ, ସିନ୍ଦୂରେ ତା'ର ଭୂଷଣ ଶେଷ ।

ଅନ୍ୟାୟ, ଅନୟମେ ସଦା ତା ଭୟ,
ଦିଅଁ ଦେବତା ଠାରେ ସର୍ବଦା ଲୟ ।

ନ କହେ ଦୁଃଖ କେବେ, ସଦା ସୁହାସୀ,
ଅଳସହୀନା, ନୁହେଁ ସୁଖାଭିଳାଷୀ ।

ଶ୍ରଦ୍ଧା, ସେନେହ ଭୁଲେ ସଯତନ୍ତେ ଧ,
ଅଦ୍ଭୁତେ କରିଦିଏ ଅସତ୍ୟ ରୋଧ ।

ଅତି ବନସ୍ତୀ କଥା କହେ ସଲ୍ଲଜେ,
ଆତ୍ମ-ସମ୍ମାନ ହାନ ହେଲେ ସେ ତେଜେ ।

ଧନ ସମ୍ପଦ ରାଜ ସମ୍ମାନ ପାଇଁ,
ଆତ୍ମ ସମ୍ମାନ ତଳେ ଛାଡ଼ିବ ନାହିଁ ।

ସଦା ଏ ମନ୍ତ୍ର ଦିଏ ସେ ମୋ ଜନକେ,
ଖାତି ନ ଥାଏ ତଳେ କାହା ଧମକେ ।

ଅଯଥା ଗୃହଁକଥା ନ ପାରେ କହି,
ଗୃହଁପ୍ରିୟଙ୍କ ଠାରୁ ଦୂରରେ ରହି ।

ସ୍ୱଭାବେ ବିମାତ ସେ ସବେଁ ଆଦର,
କଥା ଶୁଣିଲେ ଲୋକ ପ୍ରାଣ କାତର ।

ବୋଲନ୍ତି, "ଲକ୍ଷ୍ମୀ ବୋଉ ପରି ମଣିଷ
ନ ଥିବ, କଥାରେ ସେ ହରେ ପରସ ।"

ନିଜ ଦୁଃଖେ ଦୁଃଖିନୀ କାଟଇ କାଳ,
ଦୁଃଖେ ଅଟଳ, ସୁଖେ ନୁହେଁ ଉତ୍‌ଫୁଲ୍ଲ ।

ଗଉଡ଼ ଘର ବୃତ୍ତୀ କଲେ ପାଇଟି,
ପେଟ ପୂରାଇ ଦେବ ଅନ୍ନ ଦିଓଟି ।

ଆପଣା ଅନ୍ନରାଳେ ଖାଇବ ମଣ୍ଡ,
ତଅଣ ନ ଛୁଇଁବ ଆପଣା ତୁଣ୍ଡ ।

ରନ୍ଧା ସୁନ୍ଦର ସ୍ୱାଦ କେଡ଼େ ରୁଚିର,
ବୋଲନ୍ତି, "ଲକ୍ଷ୍ମୀ ବୋଉ ହାତ ମଧୁର"

ନିୟମ ନିଷ୍ଠା ଶୁଚି ନିର୍ମଳ ପଣେ,
ସନ୍ତତ ଦୃଷ୍ଟି, ନ ସହିବ ଦୂଷଣେ ।

ବ୍ୟସ୍ତ ସଙ୍କୋଚେ ସଦା ସେ ସାବଧାନ,
ଦୁଃଖେ କୁଟୁମ୍ବ ଚଳୁ ନ ତୁଟୁ ମାନ ।

ସକଳ ଓଷାବାର ପାଳଇ ସେହି,
ଅଧେ ଦିନଟି ତାର ଉପାସେ ଯାଇ ।

ବ୍ରାହ୍ମ ମୁହୂର୍ତ୍ତ ଗତ ପାହାନ୍ତ ଉଠି,
ସକଳ ବାସୀ କାମ କରେ ସାଉଁଟି ।

ଉଷା ଉଦୟୁ ପୂର୍ବୁ ସାରିବ ସ୍ନାନ,
ତୋଳିବ ଫୁଲ ଘୋରିଦେବ ଚନ୍ଦନ ।

ସନ୍ତକ କପୋଳେ ତା' ଅର୍ଘ୍ୟ ସିନ୍ଦୂର,
କନକ ବୋଲେ ଶୋହେ ମଞ୍ଜୁ-ମଞ୍ଜୁଳ ।

ବାସୀ ବସନ କେବେ ନ ପିନ୍ଧେ ସେହି,
ଖଣ୍ଡି ଗାମୁଚ୍ଛରେ ତା ବରଷ ଯାନ୍ତି ।

ବୈଶ୍ୱଦେବଙ୍କ ପୂଜା ନ ହେବା ଯାଏ,
ସ୍ୱାମୀ ଆହାର ଶେଷ ନ କଲେ ଠାଏ ।

ତୁଣ୍ଡେ ଉତ୍ତରଣ ନ ଦିଅଇ ଜନନୀ,
ପ୍ରିୟ ସନ୍ତାନେ ହାତେ ଖୋଇବ ଧନୀ ।

ସକଳ କାମସାରି କରେ ଆହାର,
ଅତିଥି ଥିଲେ ଆଗେ କରେ ସତ୍କାର ।

ଘର ବୋଲି ସାଇତି ରଖେ ସେ କେତେ,
ଦୁଃଖୀ ନିର୍ଦ୍ଧନ ଘରେ ଲକ୍ଷ୍ମୀ ସେ ସତେ ।

ସହଇ ଦୁଃଖ ଶୋକ ମରିବେ ସବୁ,
ରୋଗ ନ କରି ପାରେ ତାହାରେ କାବୁ ।

କର ଚରଣ ଯେବେ ଚଳୁଛି ତାର,
ପିଠେଇ ଦେଇ ରୋଗ, ଗୃହେ ସଂସାର ।

ଓଷ, ବଇଦ ତାର ନୁହଁଇ ଲୋଡ଼ା,
ରୋଗେ ପଛକେ ପଡ଼ିଯିବ ଗୃହେଡ଼ା ।

ଶରୀର ଦୁଃଖ ନିଜ ଅଙ୍ଗେ ଲଭଏ,
ଦଇବ ସାହା ହିନ ଦୁଃଖେ ବିତାଏ ।

ଅଭାବ ତାଡନାରେ ଗୃହସ୍ଥ ଯେବେ,
ଅଧୀର ହୋଇ ଶିରେ କର ମାରିବେ ।

ଧୈର୍ଯ୍ୟ ସାନ୍ତ୍ୱନା ତାଙ୍କୁ ଦିଏ ଘରଣୀ,
କାହିଁ କେମନ୍ତେ ଫିଟିଯାଏ ସରଣୀ ।

ଦାରିଦ୍ର୍ୟ କଷାଘାତ ପୀଡ଼ିଛି କେତେ,
ଅଣ ଆଦର ହୃଦ ସହିଛି କେତେ ।

ସବୁ ମେଣ୍ଟିଛି ପ୍ରଭୁ କରୁଣା ବଳେ,
ଘର ମର୍ଯ୍ୟାଦା କେବେ ନ ପଡ଼ି ତଳେ ।

ଆତ୍ମ ପ୍ରତ୍ୟୟ ସଙ୍ଗେ ଈଶ୍ୱର ଭୟ,
ସକଳ ଦୁଃଖ ଶୋକ କରିଛି କ୍ଷୟ ।

ଗୋଟିକ ଗୋଟି ଆଠୋଟିଙ୍କ ଜନନୀ,
ହୋଇ ପାଳିଲି ଦୁଃଖେ ସେ ଏକାକିନୀ ।

ଗର୍ଭ ଯାତନା, ଅଭାବର ତାଡ଼ନା,
ନାହିଁ ସହାୟ, ଦୈବ ଦେବା ଗଞ୍ଜଣା

ସବୁ ସହିଛି ଛାତି ପଥର କରି,
ଅଶେଷ ଦୁଃଖୁ ନିଜେ ଅଛି ଉଦ୍ଧରି ।

ପତାଇ ନାହିଁ ଦିନେ କାହାକୁ ହାତ,
ହରାଇ ନାହିଁ ଆମ ସମ୍ମାନ ମାତ ।

ଆପଣା ଧର୍ମ ଜଗି ରଖିଲେ ମାନ,
ଧର୍ମ କରିବେ ସର୍ବ ବିପଦୁଁ ତ୍ରାଣ ।

ଏଇ ବିଶ୍ୱାସ ହୃଦେ ସଦା ଅଟଳ,
ଏଇ ବିଶ୍ୱାସ ତାର ଚିର ସମ୍ବଳ ।

ସହସ୍ର ଦୁଃଖ ବୋଉ ବୁକୁରେ ଚାପି,
ନ ଜାଣେ ଦିନ ସେହୁ ରାତି ପାହାନ୍ତି ।

ପାଳନ୍ତି ପିଲେ ତାହା ଯୋଗୁଁ ମଣିଷ,
ନ ଥିଲା ଧନ, ବଳ ତାହା ଆଶୀଷ !

ଏବେ ବି ଆମଘର ଦୁଃଖୀ ସଂସାର,
ମାତ୍ର ସେ ଆମ ପୁର ଶୋଭା ସମ୍ଭାର ।

ତା ଯୋଗୁ ଘର ସେହୁ ଘରେ ଜନମି,
ତା ଧର୍ମେ ସବୁ ଦୁଃଖ ହେଉଛୁ ପାରି ।

ଦୁର୍ବଳ ତନୁ ହେଲେ ଦୋହଲେ କଣ୍ଠା,
ବୃଦ୍ଧ ବୟସ ନଇଁ ଯାଇନି ଅଣ୍ଠା ।

ବୋଉ ଯେମିତି ଘର, ବୋଉ ସଂପଦ,
ବୋଉ ଧର୍ମରୁ ଛୁଟେ ସବୁ ବିପଦ ।

× × ×

ଦିନେ ତ ବୋଉ ସେବା ନକଲି ମୁହିଁ,
ମୋ ପାଇଁ ବୋଉ ହୃଦ ହେଉଛି ଦୁହିଁ ।

ବଡ଼ ହେଲଣି, ସୁତ ଦାରା ସହିତେ,
ସଂସାର କରେ, ବୋଉ ନାହିଁ ପୁରତେ ।

ହେଲେ ମୋ ପାଇଁ ବୋଉ କାନ୍ଦଇ ନିତି,
ମୋ ଦୁଃଖେ ବୋଉ ହୃଦ ହୁଏ କରତି ।

କେହି ନ ଦିଶେ ବଡ଼ ବୋଉ ବିହୁନେ,
ଦୂରରୁ ଦୂରେ ଥାଇ ବିଗୁରେ ମନେ ।

କି କରୁଥିବ ପୁଅ, କିପରି ଥିବ,
ଦୁଃଖୀ ପେଟକୁ ତାର ଭାତ ନ ଯିବ ।

କି ସ୍ନେହ ଡ଼ୋରରେ ବନ୍ଧା ମାଆରେ ପୁଅ,
କଳନା କରିବାର କଥା ଏ ନୁହଁ ।

ଶୋଗ ବଭବେ ପଛେ ବୁଲୁଛି ପୁଅ,
ବୋଉ ନୟନୁ ନିତ ବହଇ ଲୁହ ।

ନ କରେ ଆଶା ବୋଉ ସେବା ସୋହାଗ,
ପୁଏ ଦେଖିଲେ ତାର ମନେ ସରାଗ ।

ଏତେଡ଼ରୁ ଏତେଡ଼େ ଦୁଃଖେ କରିଛୁ ବୋଉ,
ସକଳେ ସମଦୃଷ୍ଟି ଭିନ୍ନ କେ ନୋହୁଁ ।

ସବୁ ହଜିଲେ ଯିନା ସଂସାରେ ମିଳେ,
ବୋଉ ସମ୍ପଦ ପରି କିବା ମହୀରେ

ନାହିଁ, ମୁଁ ଥାଏ ଯାହା ଯାହା କରେ ଭିରସି,
ବୋଉ ମୋ ନେତ୍ରପଥେ ରହିଛି ବସି ।

ସ୍ମିତହାସ୍ୟ ବଦନା ଜନମୀ ମୋର,
ତୋ ଆଶିଷେ ଲୁଟୁ ମୋ କଷଣ ଘୋର ।

ଘେନ ଗୋ ଦେବୀ ମୋର ଭକ୍ତି ପ୍ରଣାମ,
ତୋ ସ୍ନେହେ ସଦା ମୋର ଅପ୍ରାଧ କ୍ଷମ ।

ସାଧ୍ୱୀ ଜନମୀ ମୋର ସର୍ବ ସଂପଦ,
ନମଇଁ ଭକ୍ତି ଭରେ ମୁଁ ବୋଉ ପଦ ।



ରଚନାକାଳ : ୮ । ୧୦ । ୪୩ (ଦଶହରା)
ବ୍ରହ୍ମପୁର ଜେଲ,